# କବିତା-୧୯୮୦



ସଚ୍ଚିଦାନନ୍ଦ ରାଉତରାୟ

# କବିତା—୧୯୯୦

**(KAVITA—1990)**


ଲେଖକ :

ସଚ୍ଚିଦାନଂଦ ରାଉତରାୟ

ମିସନ୍ ରୋଡ୍, କଟକ-୭୫୩୦୦୧

Writer :

**Satchidananda Raut-Roy**

Mission Road, Cuttack-753001



ପ୍ରକାଶକ :

ଦିଗଂତ ପ୍ରକାଶିନୀ

ମିସନ୍ ରୋଡ୍, କଟକ-୭୫୩୦୦୧

Publisher :

**Diganta Prakashini**

Mission Road, Cuttack-753001

ପ୍ରଥମ ସଂସ୍କରଣ : ୧୯୯୧

First edition : 1991

ମୁଦ୍ରକ :

ମା ମଂଗଳା ପ୍ରେସ୍

ଅଲିଶା ବଜାର, କଟକ-୨

Printer :

**Ma Mangala Press**

Alisha Bazar, Cuttack-2

ପ୍ରଚ୍ଛଦ ଶିଳ୍ପୀ :

ଗୌରାଂଗ ବାରିକ

ମୂଲ୍ୟ : ଟ ୩୫-୦୦

Price : **Rs. 35-00**

# ପ୍ରାକ୍‌କଥନୀ

ମୋ'ର "କବିତା—୧୯୮୭" ନାମକ କାବ୍ୟ ସଂକଳନଟି ୧୯୮୮ ମସିହାରେ ପ୍ରକାଶ ପାଇଥିଲା । ଏହା ଭିତରେ ଦୀର୍ଘ ତିନି ବର୍ଷ ବିତିଗଲାଣି । ଗତ ତିନି ବର୍ଷ ଭିତରେ ଲିଖିତ କବିତା ଗୁଡ଼ିକ "କବିତା—୧୯୯୦" ଶୀର୍ଷକ ନେଇ ପ୍ରକାଶ ପାଇବାକୁ ଯାଉଛି । ଏହି କବିତାଗୁଡ଼ିକ ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ଯଥା—ଝଂକାର, ସମାବେଶ, ପ୍ରତିବେଶୀ, ଆସଂତା କାଲି, ପାଂଚଜନ୍ୟ, ସୁଚରିତା ଓ ସମାରୋହ ପ୍ରଭୃତିରେ ଏବଂ ଦୈନିକ ପତ୍ରିକା 'ସମାଜ'ରେ ପ୍ରକାଶ ପାଇଥିଲା ଏବଂ ବିଦ୍‌ଗ୍ଧ ପାଠକ ମହଲରେ ବିଶେଷ ଆଦୃତ ହୋଇଥିଲା । ବହୁ ପାଠକ ପାଠିକା ମୋତେ ପତ୍ରଲେଖି ସେମାନଙ୍କୁ କବିତାଗୁଡ଼ିକ ଭଲ ଲାଗିଛି ବୋଲି ଜଣାଇଥିଲେ । ଏଥିପାଇଁ ମୁଁ ଉପରୋକ୍ତ ପତ୍ରିକାମାନଙ୍କ ସମ୍ପାଦକ ଓ ସହୃଦୟ ପାଠକ ପାଠିକାମାନଙ୍କ ନିକଟରେ ଋଣୀ ।

ଏହି ପୁସ୍ତକର ଶେଷ ଭାଗରେ ମୋର କେତେକ ବୈପ୍ଳବିକ ଓ ସମାଜଧର୍ମୀ କବିତା "ଚିର ପ୍ରଦୀପ୍ତ" ନାମକ ଶୀର୍ଷକରେ ସନ୍ନିବିଷ୍ଟ କରାଯାଇଛି । ଏହି କବିତା-ଗୁଡ଼ିକ ଏଥିପୂର୍ବରୁ ମୋ'ର କୌଣସି କବିତା ସଂକଳନରେ ସ୍ଥାନିତ କରାଯାଇ ନଥିଲା । ତେଣୁ ଏହା ପାଠକମାନଙ୍କ ନିକଟରେ ନୂଆ । "ଚିର ପ୍ରଦୀପ୍ତ" ସିରିଜ୍‌ର କବିତା ସେତେବେଳେ ଦୈନିକ 'ମାତୃଭୂମି' ପ୍ରଭୃତିରେ ପ୍ରକାଶ ପାଇଥିଲା । ମୋର କବିତା ରଚନା ଶକ୍ତି ଆଉ କେତେ ଦିନ ସଜୀବ ରହିବ ତାହା କେବଳ ଭଗବାନ ହିଁ ଜାଣଂତି । ମୋର ଦୃଷ୍ଟିଶକ୍ତି କ୍ରମେ କ୍ଷୀଣ ହୋଇଆସୁଛି । ତେଣୁ ନିଜେ କବିତା ଲେଖିବା ପୂର୍ବପରି ସହଜସାଧ୍ୟ ନୁହେଁ । ଏହି ପରିପେକ୍ଷୀରେ ମୁଁ ଆଶା କରିବି ଯେ ମୋ' ଦେଶର ପାଠକ ପାଠିକାମାନେ ମୋ'ଠାରୁ ଅଧିକ କାବ୍ୟକର୍ମ ଆଶା କରିବେ ନାହିଁ । ମୁଁ ଦୀର୍ଘ ୭୨ ବର୍ଷ ଧରି ସାହିତ୍ୟ ସୃଷ୍ଟି କରିଆସୁଛି । ମୋର ପ୍ରଥମ କବିତା ୧୯୬୮ ମସିହାରେ 'ସଂସ୍ମୃତ' ନାମକ ଏକ ପତ୍ରିକାରେ ପ୍ରକାଶ ପାଇଥିଲା । ତାହାପରେ ବ୍ରହ୍ମପୁରରୁ ପ୍ରକାଶିତ ସାପ୍ତାହିକ ସାହିତ୍ୟ ପତ୍ରିକା 'ନବୀନ', ମାସିକ 'ଶିଶିର' ଏବଂ କଟକରୁ ପ୍ରକାଶିତ 'ସହକାର', 'ଉତ୍କଳ ସାହିତ୍ୟ' ପ୍ରଭୃତି ପତ୍ରିକାରେ ପ୍ରକାଶ ପାଇଥିଲା ।

ଆଜି ପଛକୁ ଚାହିଁଲେ ଅତୀତର ସେହି ଦୃଶ୍ୟପଟ ମନରେ ନାନା ମିଶ୍ରିତ ଭାବନା ସୃଷ୍ଟି କରେ । ଆଶା, ନିରାଶା, ଦୁଃଖ, ଆନନ୍ଦ ଏହି ଦ୍ୱନ୍ଦ୍ୱ ଓ ସଂଘର୍ଷରେ ପୂର୍ଣ୍ଣ ମୋ'ର ସାହିତ୍ୟିକ ଜୀବନ । ମୋ'ର ଘଟଣା ବହୁଳ ଦୂର ଅତୀତର ବାଙ୍ମୟ ପ୍ରତିଛବି ମୋ କବିତା ଓ ଗଳ୍ପ ଉପନ୍ୟାସରେ ଫୁଟି ଉଠିବା ସ୍ୱାଭାବିକ । ମୁଁ କେବଳ ଗୋଟିଏ କଥା କହିବାକୁ ଚାହେଁ,—ମୁଁ ଜୀବନକୁ କେବେ ଫାଙ୍କି ଦେଇ ନାହିଁ । ଜୀବନ ହିଁ ମୋତେ ମାର୍ଗଦର୍ଶନ ଦେଇଛି । ମୁଁ ସେପରି ଜୀବନର ସ୍ରୋତମୁଖରେ ଗୋଟିଏ ଶୁଖିଲା ପତ୍ର ମାତ୍ର ।

ମୋ' ଦେଶର ପାଠକ ପାଠିକା ମୋ ରଚନାବଳୀ ପାଠକରି ଯଦି ଆନନ୍ଦ ପାଇଥାନ୍ତି ତାହେଲେ ତାହାହିଁ ମୋ ସାହିତ୍ୟିକ ଜୀବନର ଚରମ ସାର୍ଥକତା ବୋଲି ମୁଁ ମନେ କରିବି ।

ଶେଷରେ ଆଶା କରୁଛି ଏହି ନୂତନ କବିତା ସଂକଳନଟି ଦେଶର ସୁଧୀ ସମାଜରେ ଆଦୃତ ହେବ ।

ମିସନ୍ ରୋଡ଼,
କଟକ-୭୫୩୦୦୧,
ଜାନୁଆରୀ ୧୦, ୧୯୯୧

ସଚ୍ଚିଦାନନ୍ଦ ରାଉତରାୟ



# ସୂଚୀପତ୍ର

କ୍ର. ନଂ. ଶୀର୍ଷକ | ପୃଷ୍ଠାଙ୍କ



## ଚିର ପ୍ରଦୀପ୍ତ



———

# ଶିଳାଲେଖା

( ଲଓନା ସ୍ମିଥ୍ ହେମସର୍‌ଙ୍କୁ )

ସୁପ୍ରାଚୀନ ମଂନ୍ଦର ଗାତ୍ରରେ
ଦେଖିଁ ଏକ ଶିଳାଲେଖା କେଉଁ ଶତାବ୍ଦୀର,
ସମୟର ଧୂଳ ଲଗି ମଳନ, ବିବର୍ଣ୍ଣ
କ୍ଷତ ବିକ୍ଷତ ତା' ତନୁ, ଠାଏ ଠାଏ ଖଂଡିତ ହରଫ ॥

କହେ ଶିଳାଲିପି :—
ଭଗବାନ ଅରିଷ୍ଟନେମିଂକ ଜୟ ।
ଯିଏ କହିଥିଲେ, ଅହିଂସା, କରୁଣା ପ୍ରାଣୀ- ପ୍ରତି
ନଜ ପ୍ରତି ଅହିଂସା, କରୁଣା ।
ମାଂସଲୋଭୀ ବନ୍ୟଜଂତୁ ଅହିଂସାରେ ବଶ ।......
ରହିଯାଏ ଶିଳାଲିପି ।
କିଛି ଅଂଶ ହୁଏ ନାହିଁ ପଢ଼ି......

ତା'ପରେ କହେ—
ଅର୍ହତମାନଂକୁ ନମସ୍କାର,
ଅହିଂସାହିଁ ଶ୍ରେଷ୍ଠ ଅସ୍ତ୍ର,
ଆତ୍ମାର ବଂଧନ ଛିନ୍ନ ପାଇଁ...
ଆତ୍ମା ଲଭେ ମୁକ୍ତି, ସଦାଶ୍ରୟ
ସେ ମୁକ୍ତିକ କରେ ଛିନ୍ନଭିନ୍ନ
ସମସ୍ତ ଅର୍ଗଳ ॥

× × × × ତା' ପରେ ଶୂନ୍ୟ ।

ଅନ୍ଧଲେଖ କହେ ତାହାପରେ

ପ୍ରଭୁ ଗଲେ ବିବାହ ଉତ୍ସବେ

ଏବଂ ଆଶୀର୍ବାଣୀ ଦେଲେ……

ଅଭିଲେଖ ରୁଦ୍ଧ ପଢ଼େ ।

ଚୂପଚୁପ ଆକାଶ ମଂଡଳ ।

ମହାନୀରବତା ।

ନିଃଶବ୍ଦକୁ ତାଂକଦଏ ଶବ୍ଦର ଶୂନ୍ୟତା ॥



ତା ୨୧।୮।୬

କଟକ-୧

# ଟଲଷ୍ଟୟଙ୍କ ସମାଧି ନିକଟରେ

ମଣିଷର ଲୋଡ଼ା ମାତ୍ର ଅ.ଠ ଫୁଟି ଜାଗା
ସେତିକ ନେଇଛ ତୁମେ, ଇଂଚେ ବେଶୀ ନୁହେଁ ।
( ତୁମର ଗଳ୍ପଟା ପଡ଼େ ବାରବାର ମନେ )
ବାଳ ହବୁ ବଳକା ଛଳକା,
ଏକର ଏକର ବାହୁଡ଼ି
ତୁମର ରହୁବା ଘର ପୁରୁଣା ପ୍ରାସାଦ
ଅନାବାଦୀ ଜମି ପରି ପଡ଼ିଛି ସେଠାରେ,
ତୁମ ଘୋଡ଼ାଶାଳ ଏବ ଘୋଡ଼ା ଗାଡ଼ି,
ତୁମର ଏଂତୁଡ଼ିଶାଳ, ଧାଇମା'ର ଘର
ହବୁ ଆଜ ପର୍ଯ୍ୟଟକ ସ୍ଥାନ ।
ତୁମର କବର ପରେ ପଡ଼ିଅଛି ଏକ ଫୁଲମାଳ
ନବବିବାହିତ କେଉଁ ଦଂପତିଙ୍କ
ପ୍ରୀତି ଉପହାର ।
ତୁମର ଗଳ୍ପଟି ମୋ'ର ପଡ଼ିଯାଏ ମନେ ।
କାହିଁ ପାଇଁ ଏତେ ଧାଆଁ ଦୌଡ଼
ସକାଳରୁ ସୂର୍ଯ୍ୟ ଅସ୍ତ ଯାଏଁ
କାହିଁକ ଏ ରାଜଧାନୀ ଜମି,ଚୋଠା ମାଲ ମାଲ,
କହୁ ତ ଯିବନି ସଂଗେ,
ରହିଜିବ ମୁଠାଏ ପାଉଁଶ,
ତାହାହିଁ ତ ଜୀବନର ସକଳ ସାରାଂଶ ।।

ତୁମର ସେ ବଡ଼ ପେଟ୍‌ଗ୍ରାଣ୍ଟ।
ଯେଉଁଠାରେ ଧରୁଥାଅ ମାଛ
ବଡ଼ ବଡ଼ ଗଛର ଛାୟାରେ
ବନ୍‌ଶୀ ଖାଡ଼ ଫେଇ—
ଗୁହେଁ ମୋତେ କଟମଟ କରି ॥

ଏଠାରେ ପଢ଼ୁଛୁ ଇତିହାସ,
ବୋନାପାର୍ଟ ବାହୁଡା ଯାହାର,
ଏବଂ ଆନାକାର୍‌ଜନିଅର ଅଂତିମ ନିଃଶ୍ୱାସ !!
ବଗ୍ଧଟ ହୃଡାଟା କରେ ଖାଁ ଖାଁ ।
ମାଗୁଛୁ ମେଲଣି,
ଟଲଷ୍ଟୟ ! ତୁମକୁ ମୁଁ କରେ ନମସ୍କାର ॥

□□□

ତା ୧।୯।୯°
ମିସନ୍ ରୋଡ୍, କଟକ-୧

# ଅନୁଶାସନ

ମହାମେଘବାହନ ମୁଁ ଐର ଖାରବେଳ
ଲେଖାଇଲି ଏ ଅନୁଶାସନ,
ଯେନ ମୋ' ବଚନ ଯାହା ପ୍ରାଣୀକୁ ଜାଗ୍ର ।।

ଅର୍ହତମାନଙ୍କୁ ମୋ'ର କୋଟି ନମସ୍କାର ।
ନମସ୍କାର ସବୁ ତୀର୍ଥଙ୍କରେ—
ଋଷଭ, ଅରିଷ୍ଟନେମି ଆଦି ସର୍ବ ନାଥେ,
ମୋ'ର ପ୍ରିୟ ପ୍ରଜାକୁଳ, ବନ୍ଧୁ ମିତ୍ରଜନ
ଜ୍ୟେଷ୍ଠ ଓ କନିଷ୍ଠ ସରବେ ନମସ୍ୟ ।।

ପ୍ରଲମ୍ବିତେ ଝଟଇ ମୁଁ
        ସବୁ କୀଟ ପତଙ୍ଗର ପଦେ
ସମସ୍ତ ଉଦ୍‌ବିଦଗଣେ କରେ ପ୍ରଣିପତ୍ୟ ।
ସମସ୍ତେ ଲଭିବେ ସେ ପବିତ୍ର ଜଳ
        ଯାହା ସବୁ ପ୍ରାଣୀଙ୍କର ଲଭ୍ୟ—
ଅହିଂସା, କରୁଣା, ଶାନ୍ତି ତ୍ରିବେଣୀର ଧାର ।।

ମଥୁରା ସମେତ ସମଗ୍ର ଉତ୍ତରାପଥ
        ଦିଗ୍‌ବିଜୟ କରି,

ପଶ୍ଚିମ ପ୍ରାନ୍ତକେ ତୁର୍କସ୍ଥାନଯାଏଁ—
ଦାକ୍ଷିଣାତ୍ୟ ମୂଷିକଙ୍କୁ କରି ପରାହତ,
ପାଟଳିପୁତ୍ରକୁ କଲି ପଦାନତ,
ଛଡ଼ାଇ ଆଣିଲି କଳିଙ୍ଗ ଜିନକୁ,

ନଂଦରଜା ନେଇଥିଲା ଯାହାକୁ ବଳାଇ,
ଏବଂ ନେଇଥିଲା ପ୍ରତିଶୋଧ ପ୍ରିୟଦର୍ଶୀ
କଳିଂଗ ହତ୍ୟାର ॥

ଯାଂଚିଥିଲା ସେତେବେଳେ ଆଣିବାକୁ ପୁଣ୍ୟ ନଦୀ ଧାର
ଖୋଲାଇ ପ୍ରଣାଳୀ ପ୍ରଜାଂକର ହିତେ,

ମାତ୍ର ପୁଣି ମଣିଲା ଅପାର,
କି ହେବ ସେ ପବିତ୍ର ସରଣୀ,

ଅହିଂସା କରୁଣା ଛଡ଼ା କ'ଣ ଅଛି ପବିତ୍ର ନିର୍ଝର !!
ଜୀବ ପ୍ରତି ଅହିଂସା କରୁଣା
ବାସ୍ତବରେ ନିଜ ପ୍ରତି ଅହିଂସା କରୁଣା ॥

ରାଜ୍ୟ ଓ ସାମ୍ରାଜ୍ୟ ସବୁ ହେବ ଧୂଳିସ୍ତୂପ,
ତାର ହେମ ଚୂଡ଼ା, ବୈଦୁର୍ଯ୍ୟର ସ୍ତଂଭ
ହେବ ଦିନେ ମାଟିର ସୁଡ଼ଂଗ ॥

ଧନ ଓ ପ୍ରଭୁତ୍ୱଠାରୁ ଯାହା ବଡ଼ ତାହା ହିଁନା କଳା,
ଯାହା ଜୀବନର ନବ ରୂପାୟନ ।
ତେଣୁ ମୋ'ର ରାଜୁତିର ପଂଚମ ବର୍ଷରେ
କରିଥିଲି ପ୍ରଦର୍ଶନ ମୋ ଗାଂଧର୍ବବିଦ୍ୟାର ଶୋଭନ
ଗୁରୁକଳା କାମ,

ଲାସ୍ୟ ଓ ବାଦନ, ଦର୍ପ-ନୃତ୍ୟ ସହ,
ପ୍ରଜାଂକର ମନ ରଂଜନ ସକାଶେ ।
କଳାଠାରୁ ଯା' ମହତ୍ତ୍ୱ ତାହା ଧର୍ମ

ଜୀବନକୁ ଧରିରଖେ ଯାହା,
ଯା' ଶାଶ୍ୱତ, ସଦା ଗତିବାନ ।

ମୋ'ର ଚୈତ୍ୟ, ମହାବେଦ, ବୃକ୍ଷଦେବତାର ଅଧିଷ୍ଠାନ
ଯାହାର ସୂଚନା କଲ୍ପଦ୍ରୁମ; ସବୁ ସେଇ ଧର୍ମ୍ମର ସଙ୍କେତ,
ମୋ'ର କଳା, ରଂଗଶାଳା, ମଂଚଶୀର୍ଷ
ଓ ଷଡ଼ଦାରୁକା, ଜୀବନର ଧର୍ମର ଭୂମିକା ॥

ଏଇ ବେଣୀ-ଗୁଂଫା
ମୋ' ଅଂତିମ ମାର୍ଗର ଯା' ନିର୍ଜନ ବିହାର,
ତାହା ମୋ' ଉତ୍ତର କକ୍ଷ
ମହାନିର୍ବାଣର ॥



ତା ୨୩ । ୮ ।'୮୯
ମିଶନ ରୋଡ,
କଟକ-୭୫୩୦୦୧



# କ୍ଷୁଧାର କବିତା

ଖାଦ୍ୟ ଆଉ ଯେଉଁଠାରେ ତାହା ମୋର, ଯେଣୁ ମୁଁ କ୍ଷୁଧାର୍ତ୍ତ,
ଥାଉ ତାହା ପୁଲିଶ୍ ଘେରରେ, ଅବା କାହା ଗୋଦାମେ, ଖମାରେ
ତାହା ମୋର ଅଗ୍ର ଦାବି, ମୋ' କ୍ଷୁଧାର ଅନ୍ନ ।

ମୋତେ ବଂଚିବାକୁ ଦିଅ, ଜୀଇବା ମୋ' ଜୀବନର ଧର୍ମ,
ଯାହା ତାର ପ୍ରତିକୂଳ ମୁଁ ଗୃହେଁ ତା'ର ନିଧନ ।
ମୋର ହାତଆଉ ମୋର ଶ୍ରମ ଯାହା ମୋର ପ୍ରେରଣାର ଉତ୍ସ,
ଏବଂ ସବୁ ସର୍ଜନାର, କର୍ମର ଚିଂତାର,
ମୃତ୍ତିକାର ମୁଁ ସେଇ ମଣିଷ ।
ମୁଁ ନୁହେଁ ବୈଷ୍ଣବ ଜନ ଅଥବା ଫାନୁସ୍ ॥

ଶୁଣାଅ ଆଇନ୍ କଥା, ବଖାଣୁଛ ପାପ ପୁଣ୍ୟ ତତ୍ତ୍ୱ
ଆଇନ୍ ମଣିଷ ପାଇଁ, ଆଇନ୍ ପାଇଁ ନୁହେଁ ମଣିଷ ତ!
ଗଢ଼ୁଛୁ ମୁଁ ଯାହା ନିଜ ପାଇଁ ଭାଂଗି ଦେଇପାରେ ଅବହେଳେ ତାହା
ଯଦି ତାହା ପାଲଟେ ବଂଧନ ।

ଯେଉଁ ଧାନ ବୁଣିଲି କାଟିଲି,
ଯେଉଁ ଲୁଗା ଭଣିଲି ବୁଣିଲି
ଜାତ କଲି ଯେତେ ଦ୍ରବ୍ୟ ଢାଳି ଲହୁ ମାଂସ,
ତାହା ତମ ବଜାରର ପଣ୍ୟ,
କଂପାନୀର ତମ ଲାଭ-ଅଂଶ,
ମୋର ଯେତେ ବଳକା ମଜୁରି ଗଢ଼େ ତମ ମୁନାଫାର ଛକ ।
ସେ ସବୁ ଧର୍ମର ଗୁଳା, ପାପ ତକ ମୋ' ଖାତାର ଅଂକ ।

 ॥ କବିତା ୧୯୯୦ ॥

ବରଂ କହ କଛୁ ଭଲ କଥା, କହ କଛୁ ମୃତ୍ତିକାର ବାଣୀ ।
ପ୍ରେମର, ନ୍ୟାୟର, ଶାଂତର, ମୁକ୍ତର ଶୁଭବାଣୀ ଛାଡ଼ି ବୃଜୁ ବୃକ ।।

ଖାଦ୍ୟ ଥାଉ ଯେଉଁଠାରେ ତାହା ମୋର, ଯଦଚ ଜାଣେନା ଖାଦ୍ୟ କାହିଁ ।
ମୂଷା ଓ ଚୂଚୁଂନ୍ଦ୍ରା ଯାହା ଜାଣେ, ଅସ୍ତ୍ରପାକୁ ଯେ କଥା ଗୋଚର
ଜାଅଂତା ମଣିଷ ଜାଣେ ନାହିଁ, ଖାଦ୍ୟର ଖବର ।
କେଉଁଠାରେ ଲୁଗ୍ଭଇଛ, କେତେ ପ୍ରସ୍ତ କବାଟ ଭିତରେ,
ସୂର୍ଯ୍ୟଙ୍କୁ ଯାହା ଲୁଗ୍ଇଛ ଅଶୁଭର ହେବ ତାହା ଖାଦ,
ସାବଧାନ ! ମୃଦ୍ଧର ବଣିକ ।।

□ □।□

୧୬ । ୧ । ୧୯୮୧

ବଡ଼ଗ୍ରାମ-୧

# ବଂଦେ ମାତରମ୍

ଯେଠାରୁ ପ୍ରଥମେ ଘରୁ କାଢ଼ିଥିଲି ପାଦ
ଇଚ୍ଛାହୁଏ ସେଠାରୁ ମୁଁ ଯାଆଂତି କି ଫେରି,
ଡେଇଁ ମହାନଦୀ, ସମୁଦ୍ରର ଉଜାଣି ଢେଉଁର
ଗାଇ ଥରେ 'ବଂଦେ ମାତରମ୍'!

ସେଇ ଶ୍ରେଷ୍ଠ ପଲ୍ଲିଗାଆଁ ସେଇ ଶ୍ରେଷ୍ଠ ସହର ମଝିରୁ
ନାଲି ଗୋଡ଼ି ରାସ୍ତା ମାଡ଼ି,
ପୋଡ଼ିବାକୁ ବିଲାତି ବସନ, ନେଇ ଗାଂଧି ନାମ ।
ଜଗିବାକୁ ପିକେଟିଂଗ' ମଦଭାଟି ଆଗେ
ଗାଇ କଂଠଭରି 'ବଂଦେ ମାତରମ୍,'
ପୁଲିସର ବେତମାଡ଼ ଖାଇ, ହାଜତ କଟାଇ,
ଇସ୍କୁଲରୁ ନାମ କାଟି, ବୀରଦର୍ପେ ଫେରି ଢ ଘରକୁ,
ଖାଇବାକୁ ବାପାଙ୍କଠୁ ଗାଳି, ବୋଉର ତର୍ଜନା,
ଟିଉସନ୍ ମାଷ୍ଟ୍ରଂକ ଚେତାବନୀ, ଭବିଷ୍ୟ ଗଣନା,
ସେ ଭବିଷ୍ୟ ଯା' ହୁଅନା କିଛି
ଆଜର ହୁଂକଡ଼ା ରାଜନୀତିଠାରୁ ଢେର ଭଲ ।

ଘୃଣା କରେ ଏବେ ରାଜନୀତି, ଛକାପଂଝା, ମାରପେଂଚ ଖେଳ,
ନୂଆବେଶର ତୋଷାମଦ, ଏବଂ ଗୋଡ଼ଚଟା, ଛଡାପୋତା କାମ ।
ଘୃଣାକରେ ଧର୍ମ-ଧ୍ୱଜା ଯା' ଶଠର ପେଶା,
ସାହିତ୍ୟର ରଂଗାଘରେ ପଣ ପଣ ମୂର୍ଖା ।

ଆବେ ଯଦ ଫେରପାଂତ ମୋ'ର ପିଲାଦିନ
ଶୈଶବର ସୁନୀଲ ସୀମାଂତ,
ଜୀବନର ସେ ନର୍ଜନ ରେଖା ।

ନୁଖୁରା ଅଳରା ବାଳ, ଖାଲିପାଦ, ଅଂଠୁଲୁଗା ଖଦୀ
ଦନ୍ଦରେ ଖଦଡ଼ କନା, ଫେଶପାଂଠ ପଦ
ପିଲାଦିନ ସାଂଗ ସାଥୀ ସରଳ ନିର୍ମଳ,
ଏବଂ ଭାଗ୍ୟଲକ୍ଷ୍ମୀ , ସୁଖଲତା ଆଉ ଗାଁ ଝିଏ
ମୋତେ ଦେଖି ଜେଲ୍ ଦାଣ୍ଡାରେ
ଲୁଣମରା ହେଲେ, ପୋଛୁଥିବେ ଲୁହ
ପଣତ କାନରେ ଦୁଃଖରେ ଚରମ ।।

ପାଆଂନ୍ତ ମୁଁ ଫେରି ସେଇ ନିର୍ମଳ ନିଖିଳ
ଏଥରେ ପଦ ପାରଂନ୍ତ ମୁଁ ଗାଇ
ପ୍ରାଣ ଖୋଲି 'ବନ୍ଦେ ମାତରମ୍' ।

□□□



ତା ୧୯।୮।୮୯

ମିସନ୍ ରୋଡ୍, କଟକ-୧

# ଫିରିଂଗୀ

ମୁନାଫା-ଶିକାରୀମାନେ ଆସିଲେ ପଶ୍ଚିମରୁ
ଧରି ଉପଢୌକନ ଥାଳୀ,
ହୀରା ନୀଳା ମୋତି ଓ ମାଣିକ, ମୂଲ୍ୟବାନ ସୁରା ।
ନେଉଥିଲେ ବାଣିଜ୍ୟ ସନନ୍ଦ ବାଦ୍‌ଶାଙ୍କଠାରୁ
ଫିରିଂଗୀର ବୁଦ୍ଧି ଯେ ଦକାର ।
ପଛେ ତାଂକ ଆସୁଥିଲେ ବାରୁଦର ପୋତ,
ଜାହାଜ ବୋଝେଇ ତୋପ, ବଂଧୁକ, ଲସ୍କର
ଏବଂ କିଛି ନାରୀ, ବେଶ୍ୟା ଓ ଗୃହିଣୀ,
ଏବଂ ଅଂଗସଜ୍ଜା :
ଏବଂ ତା ପଛକୁ ଧର୍ମଗ୍ରଂଥ ପାଦ୍ରୀ ଓ ଯାଜକ
ଏବଂ ଶେଷେ ବର୍ଣ୍ଣମାଳା ।।

ଫିରିଂଗୀ ଗଲେଣି ଚାଲି, ଗେଂଡ଼ାଳିଆ ପର ପରି
ଛାଡ଼ିଦେଇ ପର, ଯାର ଆଜି ମାଡ଼େ ଚେର ମୂଳ
ସ୍ୱଦେଶୀ ମାଟିରେ ଘରଠାରୁ ବଜାରେ ଦପ୍ତରେ ।।
ମୁନାଫା-ବେପାରୀମାନେ ବୁଲୁଛଂତି ଗ୍ରାମ ଓ ସହରେ
ବିମାନ ବଂଦରେ ଧରି କିଛି ଅମୋଘ ଔଷଧ
ତାଜା ନୋଟ ବିଡ଼ା ଏବଂ କିଛି ଲୁହୁକଣା,
ମହାମଂତ୍ରୀଠାରୁ ପାନ ଅମଲା ପର୍ଯ୍ୟଂତ,
ବୁଣି ଅପସ୍କୃତିର ରୂପରେଖ :
ଧର୍ମ ଆଜି ଖୁଣୀର ସ୍ଲୋଗାନ,
ବ୍ୟଞ୍ଜରୁର ଏକ ଗ୍ଲାଶିଲ୍ଟ ।
ମୃତ୍ୟୁର ବଣିକମାନେ ବୁଲୁଛଂତି ସବୁ ରାଜଧାନୀ
କରିବାକୁ ମଣିଷ ଶିକାର ।।

□□□

କଟକ-୧
୨୧ । ୧ । ୧୯୮୯

# ଲୁଣି

( ଦାଂଡ଼ିଯାତ୍ରା ସ୍ମୃତିରେ )

ଲୁଣ ହୋଇ କାଠଚଂପା ଫୁଲ
　　　ଖେଳେ ମୋ' ସ୍ୱପ୍ନରେ,
ଧୂ ଧୂ ଖରାବେଳେ କେଉଁ ସମୁଦ୍ର କିନାରେ ।
ଡାଣ୍ଡିକର ଗୀତେ ତାର ପ୍ରତିଧ୍ୱନି ଶୁଣେ,
ପାହାଡ଼ନାସୀରେ କେତେବେଳେ ॥

ଲୁଣ ଅଛି ସମୁଦ୍ରରେ ମୁଁ ଛୁଡ଼ା ମାଟିରେ,
ମଝିରେ ରହିଛି ଆମ ଫିରିଂଗି ଆଇନ ।
ଖର୍ପରର ଅଂଜଳି ତୋଳି ମାଗେ ମୁଠେ ଲୁଣ,
ପ୍ରସାରିତ ସମୁଦ୍ର ବାଲିରେ··· ।
କାଠହଣା ଚଟ୍ଟିଇର ଥିଂଟ ଫଣ ନାଳି
ଲୁଣ ବି ତ ହୋଇପାରେ ମଣିଷ ରକ୍ତରେ ॥

ଶ୍ୟାମଳ କିଶୋର ଏକ ଲବଣୀ ପିରୁଲି
ଛୁଡ଼ାହୁଏ ଆସି ମୋ' ଆଗରେ
କଅଁଳ ଜଖମୀ ବୁକୁ ଧୂଳିଶର ମାଡ଼େ,
କହେ ଧୀରେ ଦେବ ମୁଠେ ଲୁଣ ?
କଏ ତୁମେ ପଚାରିଲେ କହେ ମଂଦ ହସି
ମୁଁ ଏକ 'କୁଲାଂଗାର' ବାପାଂକ ସ୍ୱପ୍ନରେ,
'ଲକ୍ଷ୍ମୀଛଡ଼ା' ବୋଲି ବୋଉ ଡାକେ ॥

ନାହିଁ ଘରଦ୍ୱାର,
ସବୁ ଏ ମାହାଲ ଅଟେ ମୋ'ର ପୋଲ୍ତାନ ।
ନିମିଷେ ଫେରାଇ ଦେଇ ମୋ'ର ପିଲାବେଳ,
ହୋଇଗଲା ଅଂର୍ତ୍ଧ୍ୟାନ ବାଳୁତ ଭ୍ରମର ।
( ଲଂଘି ହେଲେ ଷାଠିଏ ବର୍ଷର ବ୍ୟବଧାନ ॥ )

ସମସ୍ତେ ମାଗଂନ୍ତି ଲୁଣ, ଆକାଶ ଛାଂଡାର,
କେଉଁଠୁ ପାଇବ ଏତେ ଲୁଣ ?
ଶେଷେ ଦେଖେ ଲୁଣ ଅଛି ମୋ ବୁକୁ ଲହୁରେ ।
ଉହାଁକି ପାଇଲେ ଖାଲି ହେବ !!

□□□

ତା ୨୩ ମାର୍ଚ୍ଚ ୧୯୮୮

କଟକ-୭୫୩୦୦୧



# କଉଳା ଗାଈ

କଉଳା ଗାଈର କଥା ଶୁଣିଥିଲି ମାଆ କୋଳେ ।।
କ୍ଷୀର ନ ଖାଇଲେ,
କହୁଥିଲି ବୋଉ—
ସେଇ କଳା ଦୁଗ୍ଧବତୀ ଗାଈ
ରୋଜ୍ ଆସି ଛୁଡ଼ାହୁଏ ମୁନି ଆଶ୍ରମରେ
ଦେଖି ଶାଂତ ଗୁରୁକୁଳେ, ବାଛୁରୀ ସହିତ,
ଏବଂ ଆପେ ଆପେ ବୋହିଆସେ କ୍ଷୀର
ତା' ପହ୍ନାରୁ ଗଳଗଳ ହୋଇ—
ଦୁହିଁବାର ଦରକାର ନାହିଁ ।
ମୁନିକନ୍ୟା ରଖଂଧ ଯେ ସଂତରେ ତା' ଭର
କିପଂକ୍ତି କାଳିଆ ଗାଈ ପେଟ ପାଖେ ଧଳା ଧଳା ଛଢ଼ ।
କାଳୀ ଗାଈ କ୍ଷୀର ଦେଉଥାଏ ।
ଦିନେ ଦିନେ ରାତିଅଧେ ନାଗ ସାପ ଆସି
ତା' ପହ୍ନାରୁ କ୍ଷୀର ଶୋଷି ଖାଏ ।।

କୈଶୋରରେ ଦେଖିଛି ସେ କାଳୀ ଗାଈଟିକୁ
ଗଣିତ କ୍ଲାସ୍‌ରେ ନାନା କଦର୍ଥନା ହେଲେ
ଶିକ୍ଷକଂକ ହାତେ,
ଚୁପ୍ କରି ଶୋଇଥିବ ଘାସଗୁନାଂ
ସ୍କୁଲ ପଡ଼ିଆରେ, ବାଛୁରୀ ସହିତେ.
ଗୋଲପୋଷ୍ଟ ପାଖେ, ଭଣ ଭଣ ହେଉଥିବେ ମାଛି,
ଲାଂଜ ପିଟି ତଡ଼ୁଥିବ ମାଛିଂକ ତସ୍ଟି ।
ମନଟା ଉଦ୍‌ବାସ ଲାଗେ, ଖୁନ୍ଦେ ଯିବ ଟିକେ ତା' ପାଖକୁ
ଆଉଁସିଦେବ ତା' ପିଠି, ଅନାଇବ ବଲ୍ ବଲ୍ କରି
ଧୀର କୁହାଣୀରେ ।।

ଚାହିଁ ସେ ବଉଳା ଗାଈ ଦୁଧରେ ଉଚ୍ଛୁଳି ଯା'ଉ ଥନ
ସନ୍ତୁଂକ ପାନୀୟ ହେଏ, ତା ସଗେ ଅଭୟ
ଏବଂ କିଛୁ ସ୍ନେହ ।।

ଶୁଖିଗଲେ ଡଂଟି ଘୋର ସପାର ଜ୍ୱାଳାରେ
ବଢ଼ାଇଦେବ ତା' ପହ୍ଲା ଚୂଲ୍ ଚୂଲ୍ ଦୁଧେ
ଗୃହିଁଥିବ ନୀରବ ଭାଷାରେ ।।

କ୍ରମଶ ଉଭେଇଗଲା ସେ ବଉଳା ଗାଈ
ଜୀବନରୁ ଅଘୋର ଜଂଜାଳେ
ଏବଂ ଭନାଘନା ସଂଘର୍ଷ ମଧ୍ୟରେ,
ଖବେଁ ଆଜ ପୃଥିବୀରେ ଅଛୁ ଯେତେ ଅସ୍ତ୍ର

ଅଣୁବୋମା, ରକେଟ ହ୍ୱାବେଲି—
ଅଛୁ ଯେତେ ହିଂସା ଓ କପଟ, ଜଘନ୍ୟ ଦ୍ୱେଷର,
ମଣିଷର ମଣିଷ ଆହାର,
ସବୁ ପାଣି ଫାଟିଯିବ, ଯେତେଦିନ ବଂଚଥିବ
ମୋ' ବଉଳା ଗାଈ,

ସବୁକୁ ଘଉଡ଼ି ଦେବ ମାଛ ପରି ହଲଇ ଚୃମର ।
ନାଗସାପ ଆସିବନି ଆଉ ଗୋଡ଼ଅଧେ
ଶୋଷିବାକୁ ତା' ସ୍ତନରୁ କ୍ଷୀର ।।

□□□

ତା ୧୮ । ୮ । ୮୯

ମିସନ୍ ରୋଡ଼୍, କଟକ-୧



# ନିର୍ଦ୍ଦିଷ୍ଟ ଜଗତ୍

ଭଲଲାଗେ ନାହିଁ ଆଉ ନିର୍ଦ୍ଦିଷ୍ଟ ଜଗତ୍
ଦହଦଘା ଧରାବନ୍ଧା ଗତି,
ସକାଳରୁ ଉଠଯାକେ ସେ ଅଭ୍ୟସ୍ତ ଗୁଳା,
ଗୃଳବାକୁ ପୁରୁଣା ସଡ଼କ, ଦାଣ୍ଡିମାଳ ଶେଷ ପଣିକା ।
ସାତଟାରେ କ୍ଷୌରକର୍ମ, ପ୍ରାତସ୍ନାନ ଏବଂ ଶନସ୍ତୋତ୍ର,
ବେଳ ଥିଲେ ଚାହାକାର୍ଯ୍ୟ, ଫିଂପିମସ ଉପମାଂକ ଭଞ୍ଜ,
ମଧ୍ୟାହ୍ନରେ ଚଠିଂକ ଖଜଣା ॥

କେ ଲେଖିଚ ସରୁ ଆଂଗୁଠିରେ. ହୋଇ ବାଟବଣା—
'ଟେଲିଫୋନ୍ ନଂବରଟା ଦେବେ ?''
ଅନ୍ୟ କିଏ ଗୃହେଁ ପୀନ୍‌କୋଡ଼୍ ।
କେହ୍ନ ତ ମାଗଂଥ ନାହିଁ ସପୂଂର୍ଣ୍ଣ ଠିକଣା
ମଣିଷର ଗୋଟା ପରିଚୟ ।
ସମସ୍ତେ କେଉଁଠି ପର ଢବୋଷ୍ଟ ପାଣିରେ ଦଅଂଥ ପହଁର ॥

ମୁଁ ସ୍ଲାଡ଼େ ଦମ୍ ଗ୍ରୁଡ଼େ, ହୁଏ ଗଲଦ୍‌ଘର୍ମ,
ପଂଖା ତଳେ ନିଜକୁ ମୁଁ ଧର ଏକ ବିଶ୍ୱସ୍ତ ବିଡଣା ॥

ଦିନ ଶେଷେ···
ସତ୍ତା ଶିରୋମଣି ନାକି ସଂଗତରେ ପୂର୍ବ ସନ୍ଦବାସ,
ସେଇ ପରିଚିତ ମୁହଁ—ଯାହା ଖାଲି ପ୍ରତ୍ୟକ୍ଷ-ବନ୍ଧନ,
ସେଇ ଜଣାଶୁଣା ଭାଷା ବ୍ୟାକରଣ-ସିଦ୍ଧ ।
ସବୁ ଏକ ମପାଚୁପା ନିୟମର ଛନ୍ଦ ।
ସବୁଟା କଟଟତପ ବିଚାର ଦୁନିଆ ॥

ଭଲଲଗେ ନାହିଁ ଆଉ ଆଶ୍ୱସ୍ତ ଝିଙ୍ଗିଲ
ନାହିଁ ଯନ୍ଧି କିଛୁ ଆକସ୍ମିକ, ନା କିଛୁ ବିସ୍ମୟ !
ସବୁଟା ତାରୁଣ୍ୟହୀନ କରୁଣ ଆବୃତ୍ତି
ସବୁ ଏକ ସ୍ପନ୍ଦହୀନ ପ୍ରଥାର ତାଲିକା,
ସ୍ୱୟଂକ୍ରିୟ ଏକଇ ପ୍ରସ୍ତୁତ
ଯାହା ସ୍ମୃତିହୀନ, ଏକଇ ପ୍ରକାର ଫଳଶ୍ରୁତି ॥

ମୋ' ଭିତର ଦୁରନ୍ତ ଶିଶୁଟା ହୁଏ ଛଟପଟ,
ହୁଏ ଅନ୍ୱେଷ୍ୱାମୀ ସେ ଗର୍ହିତ ପଦକେ ।
ସେ ଗୃହେଁ ଅବାଟ ମାଡ଼ି ଭଣ୍ଡିବାକୁ କିଛୁ କଲମାଡ଼ !
ତୋଳିବାକୁ ଆଂବ ଗାଁ ତୋଟାମାନେ,
ଦେବା ପାଇଁ ଗାଳି କାରେ ଅକାରଣେ,
ହେବାକୁ ଖଟେଇ ଗଛବୃକ୍ଷ ଆଡ଼େ,
ଧାଇଁବାକୁ ନଈ ଆଡ଼େ, ସେପାରିର ସ୍ୱପ୍ନ
ତାକୁ ଯେ ବିବେର କରେ, ଭୁଲିଯାଏ ଏପାରିର ସ୍ୱପ୍ନ !

ମନେହୁଏ ମୋ'ର ବୟସ ନାହିଁ ମାନନ୍ତେ;
ସେ ଯେମିତି ଚିର ଅନାଗତ
ସବୁବେଳେ କିଛୁ ହେଉଥାଏ
କିଛୁ ଥାଏ ବାକି !

ସେ ଏକ ନୂତନ ଜିଜ୍ଞାସା ପ୍ରତି ସଞ୍ଚାଳକ
ଏବଂ ଏକ ନିଶ୍ଚିତ ଉତ୍ତର······



ମିଶନ୍ ରୋଡ୍, କଟକ-୧
ତା ୧୮-୬-୧୯୮୯

# ଦେଶ କାହିଁ ?

(ଖାଁ ବାଦଶା ଖାଁଙ୍କ ଅଂତ୍ୟେଷ୍ଟି ଉପଲକ୍ଷେ)

ଦେଶ କାହିଁ ? ଦେଶ କାହିଁ ?
ମାଟି ବା ପବନ
ନା ଆକାଶ ଯାହା ସର୍ବବ୍ୟାପୀ ?
ପଶ୍ନରେ ଭୂଗୋଳ ।
ଇତିହାସ ନିରୁତ୍ତର ।
ଜବାବ ତା ହଏ ମହାଶୂନ୍ୟ

ଯାହା ଦେଶ କାଳର ଅତୀତ :—
ଆତ୍ମା ମୋର ଦେଶ—
ଯା ଅଂଗୁଳି ପରିମିତ,
ଜନ୍ମ ତାର ମୋ ସାଥିରେ
ମୋ' ସାଥିରେ ନୁହେଁ ତାର ମୃତ୍ୟୁ ।

ସେ ଆତ୍ମା ବିଶ୍ୱତୋମୁଖୀ,
ବିଶ୍ୱରୁ ସେ ବିଶ୍ୱକୁ ବ୍ୟାପୃତ
ପ୍ରବଳ ପ୍ଲାବନ,
ମାନେ ନାହିଁ ସୀମାରେଖା, ଅବା ବନ୍ଧନ ।

କ୍ଷୁଦ୍ର ଏଇ ଧରଣୀର
ମଣିଷ ଯା କହୁ,
ହୁଏଁ ମୁହିଁ ପଳାତକ ଅବା ନିର୍ବାସିତ
ମୋ କବର ହୋଇଯାଉ କ୍ଷତ ଓ ବିକ୍ଷତ,
ବିସ୍ଫୋରଣେ,

ଇଂଦ୍ର-ହସ୍ତୀ ଦଂତର ଆଘାତେ,
ମୁଁ କିଂତୁ ଚିର ସମାହିତ, ଅମର ଅକ୍ଷତ
ଯଦିଚ ମୁଁ ସଦା ପ୍ରବାହିତ
ଦେଇଁ ମହାସଙ୍କାର ସଂଧାନେ ।

ମୋ ଆତ୍ମା ମୋ ଦେଶ ଚିର ଅଖଂଡ଼ିତ,
କାଳର ଯମଜ ।
ସମସ୍ତରୁ ଜନ୍ମ ହୋଇ ନିଃସମସ୍ତେ
ଲୋଡ଼େ ମୁଁ ନୈରାଜ୍ୟ ।।

□□□

ତା ୨୭।୧।୮୮
ମିସନରୋଡ଼ କଟକ-୧



# ଯିବା ଲୋକ

ଅରୁଆ ଚାଉଳ ବାସ୍ନା ଗୁଡ଼ ଶାଳଆପତଳ
ଚାଲିଯାଏ ବଣଦାଢ଼େ ମୋଟର ଆଲୁଏ,
ଯିବା ଲୋକ ଚାଲିଯାଏ ଡାକ କଆଁ ପଛୁ
ପାଦ ତାର ଆଗକୁ ବଢ଼ାଏ, ଆକାଶୁ ଆକାଶ ।।

ଚାହିଁଛଂତି ବୃକ୍ଷଲତା, ପଶୁ ପକ୍ଷୀ, ଏବଂ ଦୁବଘାସ
କେତେ ଜାତ ଫଳ ଫୁଲ, ଉଦ୍‌ଭିଦ ସଂସାର ।।

ଜଣାଶୁଣା ଲୋକଟିଏ ହୁଏ ଦରଚିହ୍ନା
ପାଲଟିବ ଚାହୁଁ ଚାହୁଁ ସମ୍ପୂର୍ଣ୍ଣ ଅଜଣା ।

ଶୂନ୍ୟସ୍ପର୍ଶ ଗୋଟିଏ ଅସ୍ମିତା ଅବା ବାଟବଣା !

ଧୂଆଁର ଶରୀରଟିଏ,···ପାଂଚଟି ପ୍ରପଂଚ
ହୁଏ ମହାକାରଣରେ ଲୀନ ।।

ଜନ୍ମ ନଈ ବୋହୁଛୁ ଉଜାଣି, ମଝିରେ ପବନ,
କେଉଁଠି ରହୁଛୁ କହ ସେଇ ଗୁପ୍ତ ବନ
ଯେଉଁଠାରେ ଦୁଇ ପକ୍ଷୀ' ଛଂତି ମୁହାଁମୁହିଁ
କୈବଲ୍ୟ-ଆକାଂକ୍ଷୀ,
ପଞ୍ଚ ପଞ୍ଚ ଯେଉଁଠାରେ ଅବର୍ତ୍ତମାନ,
ଏକାକାର କ୍ରିୟା ଓ କାରଣ ।।

ଅଗଷ୍ଟ ୨୫, ୧୯୮୮



# ସମାନଧର୍ମା

'ଉତପତ୍ସ୍ୟତେଽସ୍ତି ମମ
କୋଽପି ସମାନଧର୍ମା
କାଲୋହ୍ୟୟଂ ନିରବଧି
ବିପୁଳା ଚ ପୃଥ୍ୱୀ । (ଭବଭୂତି)

ମୋ'ର ଭଗ୍ନାଂଶକୁ ନେଇ କର ଯିଏ ବେଳ
ମୋତେ ତ ଜାଣିନା ତୁମେ
ଜାଣ ନାହିଁ ମୋ' ସମ୍ପୂର୍ଣ୍ଣ ସତ୍ତା,
ମୋ ଅବର୍ତ୍ତମାନକୁ ॥

ତ୍ରିଗୁଣ ରଜୁରେ ଛନ୍ଦା ମୁଁ ଏକ ଶରୀରୀ,
ନୁହେଁ ମୁଁ ଯେ ଦେବଶିଶୁ; ନୁହେଁ ପଶୁ ।
ଏ ସବୁକୁ ନେଇ ମୁଁ ଏକ ସଂପୂର୍ଣ୍ଣ ମଣିଷ
ଯାହାଠାରୁ ବଡ଼ କେହି ନାହିଁ ।
ମୋ' ଭିତରେ ଅଛି ସତ୍ତ୍ୱ, ରଜ, ତମ,
ଶୁଭେ ପୁଣି ପଶୁର ଗର୍ଜନ ॥

କେଉଁ ସ୍ଥିର ମୂଲ୍ୟମାନେ କେହି ନୁହେ କାହାଠାରୁ କମ୍
କହିବାର ନାହିଁ କିଛି ଭୟ
କାରଣ ମୁଁ ସ୍ୱୟଂ ସମନ୍ୱୟ ॥

ମୋ'ର ସମାନଧର୍ମା ଅଛି ଏକ ମାଟିର ଗହ୍ୱରେ,
ଯିଏ ମୋତେ ଖୋଜିନେବ
ଅସଂଖ୍ୟ ପୁସ୍ତକ ମଧ୍ୟେ ଗୋଟିଏ ଶବ୍ଦରେ ॥

ମୁଁ କଥାଁ ଖୋଜାଏ ତାକୁ ଜନ୍ମଜନ୍ମାଂତରେ
ଦେଶେ ଦେଶେ ବାଘିଲାଂତରେ······
ଯେ ଯେ ଅଛୁ ଏଇଠାରେ ଏଇ ମୁହୂର୍ତ୍ତରେ ॥

ଯଦି ବା ନ ଥାଏ, ମୁଁ ତା'କୁ ଗଢ଼ି ନେଇପାରେ
ମୋ'ର ପ୍ରତିରୂପେ,
ଯେଉଁପରି ନିଜକୁ ମୁଁ ଗଢ଼େ ପ୍ରତିକ୍ଷଣ ।
ନିଜ ଅଜଣାରେ ॥

ମୁଁ ମୋ'ର ସକାଳ ।
ନୁହେ କେଉଁ ପ୍ରଚଳିତ ପ୍ରଥାର କିଂକର
ପ୍ରସ୍ତୁତ ସମ୍ଭାବନାରାଜି ଗଚ୍ଛିତ ଇଚ୍ଛାର ।
ମୁଁ ଏକ ଚଳମାନ ଜୀବନର ସ୍ୱର ॥

□□□

କଟକ-୧
ଜୁଲାଇ ୩, ୧୯୮୯

# କୌଟିଲ୍ୟ

ମାଡ଼ ଭୟେ କେହୁ ଯଦି କହେ 'ମୁଁ ଚୋର',
ଦେବନାହିଁ ଶୂଳରେ ଚଢ଼ାଇ,
ଅଣିମାଣ୍ଡବ୍ୟଙ୍କ ପରି *
କାରଣ ସେ ଅଦଣ୍ଡ୍ୟ, ଅବଧ୍ୟ ।
ଏହା ଅଟେ କୌଟିଲ୍ୟଙ୍କ କଥା ॥

ଖ୍ୟାତି ଲୋଭେ କହେ ଯଦି କିଏ 'ମୁଁ କବି'
ଦେବନାହିଁ ହାତୀରେ ବସାଇ,
ବରଂ ଦେବ କିଛି ଲଘୁ ଦଣ୍ଡ,
ପ୍ରଥମ ସାହସ **
ଚ୍ୱଶମସାଠାରୁ ବାରପଣ ଯାଏ ଅର୍ଥଦଣ୍ଡ ॥



ମିଶନ ରୋଡ଼,
କଟକ-୧

---

* ମହର୍ଷି ଅଣିମାଣ୍ଡବ୍ୟ ଉପାଖ୍ୟାନ, ଆଦିପର୍ବ, ମହାଭାରତ

** 'ପ୍ରଥମ ସାହସ' କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ନିର୍ଦ୍ଦିଷ୍ଟ ଏକପ୍ରକାର ଶାସ୍ତି ।

# ପାଉଁଜ

କେଢ଼େ ଭଲଲାଗେ ସତେ ମୂଲଆଣି ଗୋଡ଼ର ପାଉଁଜ,
ସୁନାର ରୁପାର ନୁହେଁ, ସାମାନ୍ୟ ରସର
ଅଳଂକାର,
ଆସେ ସିଏ ଧୀରେ ଧୀରେ ଈଷତ୍ ବଂକେଇ
ମୁଂଡ଼ରେ ମୁଂଡ଼ାଇ ବାଲି ଅବା ସିମେଂଟ କଢ଼ାଇ
ଓଢ଼ଣା ଉପରେ ॥

କେବେ ପୁଣି ଛୁଡ଼ାହୋଇ ବଢ଼ାଏ ବା ଇଟା
ମିସ୍ତ୍ରୀ ହାତକୁ ।

ମନେହୁଏ ଯେପରି ବା ସେ କଲା ଭର୍ଚ
କଅଁଳ ପଦରେ ॥

ହେଉନ ତଥାପି କେଉଁ ବିଶ୍ୱବିଦ୍ୟାଳୟ
ଅଥବା କଚେରି,
ଆସେ ନାହିଁ ଦେବଦାସୀ ଓହ୍ଲାଇ ମଂଦିରୁ
ବଜାଇ ନୂପୁର ।
ଏଠି ନାହିଁ ମେଫିଷ୍ଟୋଫିଲ୍ସ୍ ହସ *

---

* ମେଫିଷ୍ଟୋଫିଲ୍ସ୍ = ମହାକବି ଗେଟେଂଙ୍କ 'ଫଷ୍ଟ' କାବ୍ୟର ସଇତାନ ପୁରୁଷ

(କାରଣ) କଏ ତା'କୁ ପାରେନା ଭୁଲାଇ ।
ଏଠି ନାହିଁ ବଳାତ୍କାର, ରେପ୍ ବା ମର୍ଡର,
ଫ୍ରାଂକେନ୍ଷ୍ଟିଇନ୍ (୧)
(ଯଦିଚ ତା ଠେର ବୋଧଗମ୍ୟ)
ସବୁ ମିଶି ଯେଉଁପରି ଏକ ଓ ଅନେକ
ବାଧିତ ତରଂଗ ।।

ସାଦାସିଧା ମଣିଷ ଗୁଡ଼ିଏ ଗଢ଼ୁଛନ୍ତି ମଟର ଗ୍ୟାରେଜ
ପୁରୁଣା ଗାଡ଼ିଟା ପାଇଁ ।
ସରିଲିଣି କାମ, ମିସ୍ତ୍ରୀ ଆସେ ନାହିଁ ।
ମାତ୍ର ଦେଖାଯାଏ ଶୁଖା ଶୁଖା ସିମେଂଟ ଉପରେ,
କଂକ୍ରିଟ ସ୍ତମ୍ଭରେ ଧଳା ଧଳା ପାଉଁଜର ଦାଗ
ଅଂତର୍ହିତ ଭୁଲ୍‌ଂତା ଧନର ଏକ ଅସ୍ତ୍ର-ଦ୍ୱାର ।।

□□□

ମିସନ ରୋଡ଼
କଟକ-୧

(୧) ଫ୍ରାଂକେନ୍ଷ୍ଟିନ୍=ଶ୍ରୀମତୀ ଶେଲୀଙ୍କ ଗଳ୍ପର ଚରିତ୍ର, ଯେ କି ନିଜ ସ୍ରଷ୍ଟାଙ୍କରୁ ଦ୍ୱାରା ନିଜେ ଉତ୍ପୀଡ଼ିତ ହୋଇଥିଲା ।

# ଶବ୍ଦର ସଂସାର

ତୁମର ଅନେକ ଚିଠି ଖାଇଲାଣି ଧୂଳି,
ରହିଛି, କେତୋଟି ବଂଶ ବାକ୍ସ ଅବା ଖାତାର ଭିତରେ
ମୟୂର ଚନ୍ଦ୍ରିକା ଯେଉଁପରି ଚିହ୍ନିତ ପୃଷ୍ଠାରେ,—
ନିଜକୁ ଗୋପନ କରି ସମୟର ତ୍ରାସ ॥

କେତେବର୍ଷ ଗଲେ, କମ୍ ନୁହେଁ କିଛି,
ବଢିଗଲା ଦେଶ୍ ନିର୍ଜନ ଶବ୍ଦର ଜଗତେ ॥

ଯାଯାବର ପୃଥିବୀର କୋଣେ
ଦୁଇଟି ମନର କଥା-ବଥା
ଆକୁଳ ଅପେକ୍ଷା ନେଇ ପୋଷ୍ଟମ୍ୟାନ୍ ପାଇଁ,
ହେଲେ ଆସୁଥିଲା ଚିଠି, କେବେ ବା ଦୁଇଟି,
ଦିନେ ଦିନେ ଛନ୍ଦ ପୁରି ଲଫାଫାରେ ଖୁନ୍ଦି,
କିପରି ଲେଖିଲ ଏତେ, ମନସ୍ତତ୍ତ୍ୱ କହିପାରେ ଏକା ॥

କ'ଣ ସବୁ ଦେଉଛ ଉତ୍ତର କିଛି ମନେ ନାହିଁ
ଲେଖିଥିବ ନିଶ୍ଚେ ବହୁ ଆଜେବାଜେ କଥା,
ମନର ସମ୍ବାଦ ସହ ଦେହର ଉତ୍ତାପ,
କିଛି ତତ୍ତ୍ୱ, କିଛି ଆଲୋଚନା,
ସବୁ କିଛି ମିଶି ଯାହା ମଣିଷର କଥା ॥

ବେଳେବେଳେ ରାଗିଚ ଭୀଷଣ,
କେବେ ଅଭିମାନ ।

ହୁଏଁ ମୁଁ ଚିରନ୍ତନ, ହୁଅ ତୁମେ ପଛେ କଳଂକଣୀ
ଶବ୍ଦର କି ଦୋଷ ! ତାହା ସ୍ୱଚ୍ଛ, ନିଷ୍ପାପ ସ୍ପଂଦନ
ଚଂଦ୍ରର କଳଂକ ସତ୍ତ୍ୱେ, ନାହିଁ ତହିଁ କିଛି ଧୂଳିମଳି ॥

ଶବ୍ଦର ସେ ମାୟା-ଜଗତରେ
ଥିଲି ହୋଇ ବଂଶୀ କଚ୍ଛୁଦନ ଅବା ବର୍ଷ, ଗଣି ଲଭ ନାହିଁ ॥

ଶବ୍ଦଂକ ବିଚିତ୍ର ରଂଗ, ଅକ୍ଷରର ଲଘୁ ଇଂଦ୍ରଜାଲ
କେବେ ଜାମୁକୋଳି ରଂଗ ଜାଲରେ ରଞ୍ଜିତ
କେବେ ପୁଣି ସବୁଜ ବର୍ଣ୍ଣର, ନୂଆ ଧାନ ରଂଗେ ॥

ଶବ୍ଦମାନେ ହୋଇ ପ୍ରଜାପତି ଝାଡ଼ୁଥିଲେ ଡେଣା,
ମଂଗଳ ଉଜ୍ଜ୍ୱଳ ବାକ୍ୟମାନ ଲେଖାର ବିସ୍ମୟେ ଭରପୁର ॥

ଯଦିଓ ବା ଅର୍ଦ୍ଧ-ଉଚ୍ଚାରିତ ଠାଏ ଠାଏ
ଯାହା ସ୍ୱାଭାବିକ୍, ପ୍ରାଂଜଳ ଯଦ୍ୟପି ତାମ୍ରଶାସନ ପରିକା ॥

× × ×

ଜୀବନର ଅହେତୁକ ଯଂତ୍ରଣାରୁ ଫିଟି
ନେଇଥିଲି ଆଶ୍ରୟ ଯେ ଶବ୍ଦ-ବିଶ୍ୱେ ଧରିର ଦୁଇଟି
ବିକଳ ଅସ୍ଥିର ପ୍ରାଣ, କେବଳ ହିଁ ଲୋଡ଼ା ଥିଲା ମୁକ୍ତି ।
ମୁକ୍ତି ବଂଧନରୁ, ଯା'ର ଅର୍ଥ ସଂସାର ସ୍ୱପରୁ—
ନ ଥିଲା ଆପତ୍ତି, କିଂବା ଇଚ୍ଛା ପରିଷ୍ଟରେ ବାଂଧି ରଖିବାକୁ ॥

ଜୀବନ କ୍ଷଣକ ପାଇଁ ନ ପାରୁ ମୁଁ 'ମୋହ ମୁଦ୍ଗରର' ଶ
ଜାଣେ ଭଲ କରି, ତୁମେ ଜାଣ,
ସମସ୍ତେ ଜାଣଂତି ॥

କିବା ସ୍ଥିର ପାଣିଫୋଟକାରେ ?
ମାତ୍ର କେତେଜଣ କହୁ ସୁହିଁଛଂତି ମୁକ୍ତି
ଯେ ମୁକ୍ତିର ସର୍ତ୍ତ ନାହିଁ, ଅର୍ଥ ନାହିଁ ସଂସାର ଭାଷାରେ,
ଯାହା ସ୍ୱତନ୍ତ୍ର;

ଯାହା ସବୁ ଯାଇଛି ଊର୍ଦ୍ଧ୍ୱରେ··· । ତରଳ ନକ୍ଷତ୍ର···
ଭୁଲ ଆଉ ଭୁଲିବା ମଧ୍ୟରେ ଥିବା ବ୍ୟବଧାନ
ଜାଣିଥିଲେ ଭଲ କର, ରହୁଚ କହୁଚ ॥

ଭୁଲ ବା କହିବ କିଆଁ ? ମଣିଷ କି ବୁଝିପାରେ ସତେ
କ'ଣ ଭୁଲ କ'ଣ ବା ଠିକ୍ !

ମୁଁ କ'ଣ ବୁଝିଚି ନିଜକୁ ? କ'ଣ ଚାହେଁ କ'ଣ ବା ନ ଚାହେଁ
ଏବଂ ଯଦି ଚାହେଁ ତା' ହୁଏତ ଖୋଜିବାର ଠିକ୍ ଉପଯୁକ୍ତ !!

ତା'ଛଡ଼ା ସବୁ ଭୁଲ ଯାଇସ୍‌ର ଦୃଶ୍ୟ,
ଯା' ତମକୁ ବୁଝାଇ ବସିଛି ସତ କଥା ଯା' ସମ୍ପୂର୍ଣ୍ଣ ମିଛ ॥

ସବୁ ଭୁଲ ଜନ୍ମରୁ ଜାତ ।
ସେପରି ଭୁଲ ଯେ ଆମେ କରିନାହେଁ ନୁହେଁ କ'ଣ ଏହା ଆତଂକିତ !
ଏବଂ ସୁଖର ବିଷୟ ?

କେତେକ ଚଠିରେ ଦେଖେଁ କେତେକ ଲୋକନ୍
କାଟିତ ନିଷ୍ଠାରେ, ଯେପରିକି ପଛ ହେବ ନାହିଁ,
କାହିଁକି କାଟିତ ? ଲଜ୍ଜା ନା ଭୟ ? ନା କେଉଁ
ଅଦୃଶ୍ୟ ଅପାର ଜଗୁଆଳ ତରେ
କେଉଁ ଏକ ପ୍ରାଚୀନ ପଂଥାର ?

ଡରନାହିଁ ଯଦି ତୁମେ ନିଜକୁ ତା'ହେଲେ
ଡ଼ରୁଥିଲ କାହିଁ ଦୃଶ୍ୟଆଯାକୁ
ଗ୍ରହଣ, ବାଲିକ !!

କ'ଣ ଦରକାର ଥିଲା ଲୁଚାଇବା ନିଜଠୁ ନିଜକୁ ?
ଯେ ଯା' ହଉ, ସବେଁ ଆଜ ସ୍ମୃତିରେ ସଙ୍ଗୋଳ—
ଅତୀତ ବି ଲାଇଲହେ, ବର୍ତ୍ତମାନ ନୁହେ ତା' ଶାଂତୋଳ ॥

ତୁମେ କ'ଣ ଫିଙ୍ଗିଦେଇପାର ସମସ୍ତ ସ୍ମୃତିକ
ଯେଉଁପରି ଅଳକର ଫୁଲ ଗାଧୁଆ ତୁଠରେ ଫିଂଗିଆ' ନଥକ !

ଅତୀତକୁ ରଖି ତା ସ୍ଥାନରେ
ତୁମେ କ'ଣ ପାରବନ ସେଠାକୁ ଉଠାଇ
କିଛି ସ୍ୱପ୍ନ, କିଛି ଆଶା, ବଂଚବାର, ରଚବାର ଓ
ଗୁଲବାର ଆଉ ଭୁଲବାର ନୂତନ କୌଶଳ !!



ତା ୧୫ । ୮ । ୧୯୮୯,
ମିଶନ୍ ରୋଡ
କଟକ-୧

# ମହାଜାଗତିକ

ସ୍ୱପ୍ନ ଦେଖେ ମହାଜଗତର ।
ଯେଉଁଠାରେ କୋଟି କୋଟି ସୌରମଂଡଳ
ଘୂର୍ଣ୍ଣପାକ ଖାଏ ।
ଗଣି ଗଣି ନକ୍ଷତ୍ର ମଂଡଳ
ଆଲୋକ ବୁଦ୍‌ବୁଦ୍‌ ପରି
        କ୍ଷଣେ ଜଳିଉଠେ, ପୁଣି ଲିଭିଯାଏ ॥

ଚଂଦ୍ର ପୃଷ୍ଠେ ଅବତରି
        ଦେଖେଁ ତହିଁ ପୃଥିବୀ ଉଦୟ ।
କେତେ ଗ୍ରହ, ଉପଗ୍ରହ, ଜ୍ୟୋତିପୁଂଜ
କେତେ ଇଳାବୃତ, ଦ୍ୱୀପ, ଅଂତରୀପ,
                ବ୍ରହ୍ମାଂଡ଼ ଭୂଗୋଳ
                ଏଠି ଏକାକାର ।
କ୍ଷୁଦ୍ରାଦପି କ୍ଷୁଦ୍ର ପ୍ଲାନେଟୋରିୟମ
                କଣ ବା ଦେଖାଏ ?

ମୁଁ ଏଇ ଶୂନ୍ୟ ମଂଡ଼ଳର
                ଏକ ସାକ୍ଷୀ ।
ଏକ କ୍ଷୁଦ୍ର ଅଣୁର କଣାଏ ।
ମୁଁ ପିଂଡ, ମୁଁ ପୁଣି ବ୍ରହ୍ମାଂଡ,
ମୁଁ ଜୀବ ଅଜୀବର ଦ୍ୱଂଦ୍ୱ
                ଏକ ପ୍ରାଣସତ୍ତ୍ୱ,
ସାମାନ୍ୟରୁ ମୁଁ ପୁଣି ବିଶେଷ,
ସୂକ୍ଷ୍ମରୁ ପ୍ରସର ମୁଁ ଅଣାକାର,
ଅଖଂଡ ମୁକ୍ତର କଣିକାଏ ॥

□□□

ତା ୩୧ । ୩ । ୮୭
କଟକ-୧

# ନାଗକନ୍ୟା

ଅସଂଭବ ଯଂତ୍ରଣାର ସର୍ପ-ଶଯ୍ୟା ଶେଷେ
ମୁଁ ତାକୁ ପାଇଲି ଯେବେ ନଷ୍ଟିତ ବର୍ଷାରେ,
ତେବେଁ ସେ ନେଇଚ ଶୋଷି ସମସ୍ତ ସତ୍ତ୍ୱର
ସମସ୍ତ ଅର୍ଯ୍ୟାସ ମୋର, ଏବଂ ଏକ ନାଗକନ୍ୟା ହୋଇ
ରହିଚ ଜଡ଼ାଇ ମୋର ସର୍ବ ଦେହ ମନେ ॥

ମୁଁ ଦେଖେଁ ତା ମେଘାଳୁର ଦୁଇ ଆଖି ତଳେ
ମୋର ଦୁଇ ଅର୍ଦ୍ଧ କ୍ରମେ ହଜି ଯାଇ ହୁଏ ଏକାକାର,
ମୋର ଜଡ଼-ସତ୍ତ୍ୱ ହୁଏ ଅଦ୍ୱୈତର ଘର ।

ମନେହୁଏ ତାର ସେଇ ଜଣାଶୁଣା ସାପର ଓଠରେ
ଯେଉଁପରି ଝୁଲୁଅଛି ଅଦଭୁତ ବିସ୍ମୟ
ଏବଂ ତାର ଦୁଇ ସ୍ତନ ରଖିଚ ଲୁଚାଇ
କେଉଁ ଏକ ସାମ୍ରାଜ୍ଞୀର ବିଶାଳ ହୃଦୟ
ଏବଂ ସମସ୍ତ ଐଶର୍ଯ୍ୟ, ଅଣିମା ଲଘିମା ଆଦି
ଯା କରୁ ଆଶ୍ଚର୍ଯ୍ୟ
ଏ ସୃଷ୍ଟିରେ, ଏ ଜୀବନେ, ଦୃଷ୍ଟ ବା ଅଦୃଷ୍ଟ ।
ଚତୁର୍ବର୍ଗ ଫଳ ॥

ମୁଁ ଜାଣେ ସେ ଯେଉଁପରି ଗୋଟିଏ ଉତ୍ତର
ସମସ୍ତ ପ୍ରଶ୍ନର ।
ଏବଂ ମୋର ଅଲଂଘ୍ୟ ଅଦୃଷ୍ଟ ॥

□□□

୭।୮।୯।୭୭
କଟକ-୧

# ଧ୍ୟାନ

ମୋ ହାଡ଼କୁ ମୁଁ ପସ୍ତରେ ଯେଉଁଠୁ ଆରଂଭ,—
ଇଏ କ'ଣ ? ଦେଖେଁ ମୁଁ ତ ଅନେକ ଆକୃତି
ଲଜ୍ଜାଶୀଳ କେତେ ପଶୁ, ତେଣାକାର ଭିନ୍ନ ଭିନ୍ନ ଗତି,
ପୁଣି ଦେଖେଁ ଶିରାର ସୁଡ଼ଂଗ ମଧ୍ୟେ ଏକ ସ୍ୱର୍ଣ୍ଣ-ସ୍ତଂଭ,
ମୋ' ଆତ୍ମାର ଘରେ ବଂଧା ଭିନ୍ନ ଭିନ୍ନ ରୂପ,
ଯୁଗ୍ମାହାଙ୍କ, କିଂଭୂତ ଆକାର
ନିଜ ନଗ୍ନତାର ଜୟୋଲ୍ଲାସ
ଯାହାଂକର ହୋଇ ନାହିଁ ଶେଷ,
ଯା'ଠୁ ବେଶୀ ନିଦ୍ରା କିଛୁ ପାରେ ନାହିଁ ଦେଇ ॥

ଜାଗରଣ କରେ ଯାଂକୁ ନପୁଂସକ, ନିର୍ବୀର୍ଯ୍ୟ କଂଢେଇ
ମୁଁ ଦେଖୁଚି ମହାକାଶ
ଘୋର ନୀଳବର୍ଣ୍ଣ,
ଯେଉଁପରି ରକ୍ତର ଛୁରଣି
ପୁଣି ଦ୍ୱିଖଂଡ଼ିତ ॥

ବୃଦ୍ଧତାର ଭବିଷ୍ୟତ
ଝିଙ୍କାଂଢିକ ବର୍ତ୍ତମାନ,
ଚତୁର୍ଦ୍ଧା ଅତୀତ
ଏବଂ ମୋର ଦଶ ପିତା
ମୋ' ଧାସରେ ସିଏ ପ୍ରବାହିତ,
ଏବଂ ଏକ ସଂଘର୍ଷର ଭୂତ
ମୋ' ଭିତରୁ ଜନ୍ମନିଏ

ମୋ ଜନ୍ମର ଭୁହୁଡ଼ିରୁ
ମୃତ୍ୟୁର ପଣଖା ଯାଏଁ
ମୋ' ଦୁର୍ଗକୁ କରି ଚୂର୍ଣ୍ଣିଭୂତ ॥

ଏବଂ ମୁଁ ହୁଏ ଏକ ପୋକ
ଛଜ'ନ ଏକକ
ଏକାଦଶ ଅବତାର ମୋର
ସର୍ବଶେଷ ମୋହ୍ୱର ଘଟକ ॥ * □□□

୨୪ । ୧୨ । ୭୮

କଟକ-୧

* ( ଥିଓଡ଼ର ରୋଏଥ୍‌କେଙ୍କ ଉଦ୍ଦେଶ୍ୟରେ )

# ସଂପର୍କ

ଆଜି ତୁମେ ଯେଉଁଠାରେ
ଯେଉଁ ସମୟରେ
ତମ ନାଆଁଟିକୁ ମୁଁ ଆଶୀର୍ବାଦ କରେ,
ରହୁ ତାହା ଚିର ମୁକ୍ତ, ରହୁ ତା' ଶ୍ୟାମଳ
ଏଇ ରୁକ୍ଷ ଧରଣୀରେ, ଚିହ୍ନୋଟି ଅକ୍ଷର ॥

ବହୁ ପଥ, ବହୁ ଦଗ, ବହୁ ଚିହ୍ନ ମେଳେ
ଗୋଟିଏ ବିମୁକ୍ତ ମନ ଯେପରି ସକାଳ,—
ତାହା ଏକ ସ୍ଥିରବିଂଦୁ, ସଂପର୍କ ଚିର ॥

ବହୁ ରାସ୍ତା ବହୁ ଆଡେ ଧାଏଁ
ନଦୀରେ ଅସଂଖ୍ୟ ବୋଟ୍, ବହୁ ଟ୍ରେନ୍ ବହୁଆଡ଼େ ଯାଏ,
କିଏ ଯାଏ କାହିଁ···ଯଦି ଭେଟ ହୁଏ
କେଉଁଠାରେ, ସଡ଼କରେ ଅଥବା ମଂଦିରେ
ନିଶ୍ୱାସ ନିଶ୍ୱାସେ ଛୁଏଁ, ବଚନରେ ମିଶଇ ବଚନ,
ଆଖିର ସେ ଦିଆ ନିଆ, ଦେହଗଂଧ କେତକୀର ବାସ,
ଯଦି ତା' ମନକୁ ପାଏ, ହୃଦୟକୁ ଛୁଏଁ
ଗଢ଼ିଉଠେ ଗୋଟିଏ ସଂପର୍କ (ଅବା ପ୍ରସ୍ତାବନା)
କାଟି ଦେଇ ସବୁ ସର୍ତ୍ତ, ଭୟର ଆବର୍ତ୍ତ
ଜନ୍ମଗତ ପଣ—

ମଣିଷକୁ ଦିଏ ତାହା ଟିକିଏ ଆନଂଦ
ଟିକେ ସ୍ୱାଧୀନତା
ଫୁଟେ ଯାହା କଇଁ ଫଲ ପରି ନିଜ ଗ୍ରୁଏଁ
ଫୁଟିବାର ଏକାନ୍ତ ଆଗ୍ରହେ ॥

ହୁଏତ ବା ଭୁଲ କରେ କାହୁଁ,
ମଣିଷ ହିଁ ଭୁଲ କରେ, କରେନା ପଥର ।

ଦେବତ୍ୱ ଯଦ ରହେ ନାହିଁ ତା' ଜରୁଥର
(କାରଣ ସେ ନୁହେଁ ଜଡ଼)
ହୁଏ ଫୁଲ ସବୁ ଭୁଲ ତାର ଯେଣୁ ସିଏ ମୁକ୍ତ ନଦାଧାର ॥

ମୁଁ ହୁଁ ତ ଉତ୍ସୃତ୍ର କାରଣ
ସବୁ ସୃଜନର ॥ □□□

ତା ୨୨।୮।୧୯୯୦

ମିଶନ ରୋଡ୍, କଟକ-୧

# ନାରୀ

ନାରୀ ଏକ ବର୍ଷାଋତୁ
ଗୃହରୁ ଅଂ ଗନ ଯାଏଁ ଅଂଗନଠୁ
ବନସ୍ଥଳୀ ସୀମା
ଦୃଷ୍ଟି-ରେଖା ଛୁଏଁ ॥

ମୌସୁମୀର ଚଳ ପତ୍ର ଧାନବିଲ ପରେ
ବୋହି ଚାଲେ ହେବା ଯାଏଁ ଏକ ଉପନଦୀ
ଲଂଘିବାକୁ କୂଳ , ଶବ୍ଦ ଓ ଅର୍ଥର,
ହେବା ପାଇଁ ଗୋଟିଏ ବ୍ୟଂଜନା,
ଭୁଲିଯାଇ ସବୁ ବୁଝା ଶୁଝା
ରହିବାକୁ ଚାହେଁ ସେ ଅବୁଝା
ନିତ୍ୟ ବର୍ତ୍ତମାନ, ଲେଡ଼େ ଶ୍ୟାମଲତା—

ଏ ପଟେ ଡାଲୁଅ କ୍ଷେତ, ସେ ପାଖରେ
ତମାଲର ଛାଇ ।
ସେ ଯେପରି ଏକ କ୍ରିୟାପଦ,
ସୃଷ୍ଟିର ପ୍ରେରଣା,
ଏବଂ ନିଜେ ସୃଜନ ପ୍ରକ୍ରିୟା ॥

ଭଲ ଲାଗେ ରହିବାକୁ ତାକୁ ମଧ୍ୟସ୍ଥଳେ,
ନୁହେଁ ଆଗେ କ୍ୱଚିତ୍ ପଛରେ ।
ଜାଣେ ସିଏ କାହିଁ ନିଜ ସ୍ଥାନ
ଖୋଜିନିଏ ଅନାୟାସେ ବିପୁଳ ପୃଥ୍ୱୀରେ ॥

ନାରୀ ସିନା ପୁରୁଷର ବିପରୀତ ହସ୍ତ
ବିରୋଧୀ ପ୍ରତିମା,
ତେଣୁ ଏତେ ପାଖେ ଟାଣେ, ଏତେ ସମ୍ମୋହନ !!

ବହୁଧା ବିଭେଦ ରୂପେ ହୁଡ଼ା ହୁଏ ଅ.ସି ପ୍ରଚ୍ଛନ୍ନ ।
କେବେ ଘନ ବାଦଲ ଗୁମ୍ଫାରେ
ଖେଳୁଥାଏ ମେଘ-କନ୍ୟା ହୋଇ
କେବେ ପୁଣି ଲଜ୍ଜାବତୀ
ଟାଣି ବନ ପଦର ଓଢ଼ଣା ।।

ସବୁବେଳେ ସେ ଏକବଚନ
ଆକର୍ଷଣ ଚଳିକା,
ଯଦିଓ ସେ ବହୁ, ଏକ ବହୁ ମଧ୍ୟେ-
ନିଜର ମୌଳିକ ରୂପେ
ଅବା ଅନୁବାଦେ ।।

□□□

୨୩ । ୫ । ୯୦

କଟକ-୭୫୩୦୦୧

# ଏକ ବିଶ୍ୱ

ପୃଥିବୀ ଗୋଟିଏ, ମାତ୍ର ବିଶ୍ୱ ଭାଗ ଭାଗ
ବହୁ ରେଖା, ବହୁ ବୃତ୍ତ, ବହୁ ଚକ୍ର, ମତ
ଗଢ଼ିଅଛୁ ବାଡ଼, ଭେଦର ପ୍ରାଚୀର
ମଣିଷକୁ କରେ ଯାହା ମଣିଷଠୁ ଭିନ୍ନ ।।

କାଂଥ କହେ ମୁହିଁ ବଡ଼,
ଗାର କହେ ମୁଁ ହିଁ ମହାନ ।

ଧର୍ମ ମାନେ ମଣିଷ ଶିକାର,
ଧର୍ମ ଆଜି ହତିଆର ଅଲଗାବାଦୀର,
ମଂଦିର ପାଲଟେ ଦୁର୍ଗ ଆତଂକବାଦର;
ଭାଷା ପାଇଁ ଯୁଝିବାକୁ ଡାକ ଦିଏ
ମୂର୍ଖଂକ ସର୍ଦାର ।।

ମଣିଷଟା ମନେହୁଏ ଯାଇଛୁ ବଦଳି
ମନେହୁଏ ସେ ଯେପରି ଅଧେ ଜାନୋୱାର,
ଜନ୍ମିଛୁ ଏ ସଭ୍ୟତା ଜଠରୁ,
ଯେ ସଭ୍ୟତା ଏକ ଯାଜ୍ଞସେନୀ—
ଜନ୍ମ ଯାର ଯଂଜ୍ଞଶାଳୁ ଯଜ୍ଞର ନିଆଁରୁ,
ଲୋଡ଼ା ଯା'ର ଆଂଜୁଳାଏ ରକ୍ତ
ଏବଂ ସେ ଲାଗି ଅଠର
ଅକ୍ଷୌହିଣୀ ସେନାର ମୁର୍ଦାର,
ଯାହାର ଶୈଶବ ନାହିଁ, ଅତୀତ ଯା' କେବଳ ପାଉଁଶ ।।

ଧରଣୀ 'ସବୁଜ ଘର' ପାଲଟିଛି ଆଜ,
ଚନ୍ଦ୍ରର ଉତ୍ତାପ ବଢ଼େ, ଲକ୍ଷ୍ୟ ମରୁଭୂମି,
ଅନିବାର୍ଯ୍ୟ ଧ୍ୱଂସ ॥

ବିଷାଏ ପବନ, ବିଭିନ୍ନ ଭାଙ୍ଗନ,
ଉଦ୍ଭିଦ ଜଗତ୍ ହୁଏ କ୍ରମଶ ନିଶ୍ଚିହ୍ନ,
ନାହିଁ ଅମ୍ଳଜାନ ।

ଶ୍ୱାସରୁଦ୍ଧ ପ୍ରାଣୀ, ଉଦ୍ଭ୍ରାନ୍ତ ଜୀବନ,
କିଏ ଜାଣେ କେତେବେଳେ
ସାରା ସୃଷ୍ଟି ହୋଇବ ଅଙ୍ଗାର ।
ମଣିଷର ସମବେତ ଭାଗ୍ୟ ମାଗେ ବର—
'ଏକ ବିଶ୍ୱ', ଅବିଭାଜ୍ୟ, ସ୍ଥିର
ମଣିଷର ବାସଯୋଗ୍ୟ ଗୋଟିଏ ନିଖିଳ ॥



ମିଶନରୋଡ଼
କଟକ-୧

# ବଂଶବୃକ୍ଷ

ବନ୍ୟ ପ୍ରାଣୀ ହୁଅନ୍ତି ନିର୍ବଂଶ,
ସ୍ୱଭାବ ନା ଜଳବାୟୁ ଆଉ
ଜୀବବନ୍ଧ୍ୟା କହେ ।।

ଯେଉଁପରି ଡାଇନୋସରସ,
ନୀଳଗାଈ, କୃଷ୍ଣସାର ମୃଗ,
ସେମାନଙ୍କ ବଂଶ ଯାଏ ଲଭି,
ସଂଖ୍ୟା କମି ଆସେ ।।
ସେମାନଙ୍କ ସଂରକ୍ଷଣ ପାଇଁ
ଲୋଡ଼ାହୁଏ ଅଭୟ ଅରଣ୍ୟ ।।

ସେହିପରି ସଂଖ୍ୟା ଆସେ କମି
ଭଲଲୋକଙ୍କର, ସଂସାରରେ କ୍ରମେ
ରହିଛନ୍ତି କାଁ ଭାଁ ମାତ୍ର କେତେ ଜଣ
ଗଣି ହେବ ଆଙ୍ଗୁଠି ଅଗରେ
ଯେଉଁମାନେ ଯାଆନ୍ତିନି ମନ୍ତ୍ରୀଙ୍କ ଜଢକୁ
ବଢ଼ାଇବା ପାଇଁ ପିଲାଙ୍କ ନଂବର,
ବଢ଼ାନ୍ତିନି ହାତ ଟେବୁଲର ତଳେ,
କଷ୍ଟେ ମଷ୍ଟେ ଚଳିଯାନ୍ତି,
ସାଦାସିଧା ନିର୍ଭୀକ ମଣିଷ,
କାଟିଯାନ୍ତି ଦିନ ।।

ଜମେ ଯିଏ ହୁଅଂଛ ବଗଲ,
ଧନେ ଯିଏ ଲଭିଯିବେ
ସଂସାରୁ ସମୂଳେ ॥

ରହିବେ କେବଳ ଧୂର୍ତ୍ତ, ଗୁଲବାଜ୍ ଲୋକେ
କଳାକୁ ଯେ କରିପାରେ ଧଳା ।
ସେମାନେ ଅମର ।

ସେମାନଂକ ବଂଶବୃକ୍ଷ ହେବ ଅକ୍ଷୟ ॥ □□□

ମିଶନ୍ ରୋଡ୍,
କଟକ-୧

# ଗାଆଁ ଲୋକେ

ଗାଆଁ ଲୋକେ ଆସୁଛନ୍ତି ଶଂଖୋଳିବା ପାଇଁ,
ପୋଲ୍ ଉପରେ ଦିଶେ ତାଂକ ମଥା,
ମଝିରେ ହେଡ଼ମାଷ୍ଟ୍ରେ ୟୁ. ପି. ସ୍କୁଲର
                    ଏବଂ ତାଂକ ଛତା,
ଶିକ୍ଷୟିତ୍ରୀ ବୀଣା ଦେବୀ, ହେମଲତା ଦାସ ପଛରେ
ପିଲାଦିନ ସାଥୀ ହରି ମିଶ୍ରେ, ନବଘନ,
ରଘୁ ଓ ତା'ର ନାତି,
ଖେଳସାଥୀ କହ୍ନୁ ହୋତା, ଉପେଂଦ୍ରେ, ବୈରାଗୀ,
(ସଂଖ୍ୟା ଯାର କମେ ଧୀରେ ଧୀରେ)
ପଛରେ କେତେଜଣ ଟୁଅ, କଲେଜ ଛାତ୍ର,
ଶେଷରେ ଅବସରପ୍ରାପ୍ତ
ଦାରୋଗା ବିପିନ, ବଡ଼ଓ ରମେଶବାବୁ ॥

ଦିଶିଲଣି ଆମ ଘର ଗୁଳ,
ଘଡ଼ିକରେ ଗୋଟେ ଅଧେ ଗାଈ ।
ସେଇ ବରଗଛଟା ସେମିତି ଅଛି, ବାପାଂକ ଅମଳୁ,
ଛଲେ ଠାକୁରାଣୀ ॥

ଦିଶୁଛି କମାରଶାଳ, ବଂଚିଛି କି ଅନଂତା କମାର ?
ଗାଆଁ ବାଲା ଆସଂତି ଆଗେଇ, ସଜବାଜ ହୋଇ,
ମୋ'ର ମନେହୁଏ ମୁଁ ନଗ୍ନ, ଦେହରେ
                    ଲୁଗାପଟା ନାହିଁ ।

ମୁଁ ନଗ୍ନ, ବଡ଼ ନଗ୍ନ, କିଛୁ ମୋର ନାହିଁ ।।

ମୋ ମୁହଁରେ ସେଇ ହସ ଯାହା ଖୁସି, ଯାହା ଦୁଃଖ
କିଂବା ଯାହା ପାର କହ ।
ଗାଁଲୋକେ ଆସଂଥି ପାଟେଇ
ମୋର ଟ୍ୟାକ୍ସି ଆଡ଼େ ।।

କିଛି ହିଁ ତ କହିପାରେ ନାହିଁ ଜବାବରେ
ସେମାନଙ୍କ ଅଜସ୍ର କଥାର ।।

□□□

ତା ୨୨ । ୮ । ୧୯୯୦

ମିସନ ରୋଡ,

କଟକ-୭୫୩୦୦୧

# ଏକ ସୂର୍ଯ୍ୟୋଦୟ

ଦୁଇ ପାହାଡ଼ ମଝିରେ ସୂର୍ଯ୍ୟ ଉଠି ଆସେ ।

ଜଅଁଳ ଆଲୁଅ ପଡ଼େ ପୋଖରୀ ଫୁଲରେ,
ଭଲଲାଗେ ସକାଳୁଆ ଜଅଁଳିଆ ଖରା,
ନରମ ରଂଜନ ରଶ୍ମି ଅବିର ରଂଗର
ଗଛଆଡ଼େ ଶୁଣାଯାଏ ପକ୍ଷୀଙ୍କ ଡାକଳି ।
ନଈକୂଳେ ହାଲୁକା ପବନ ମାରୁଛି ଆହ୍ଲାଦ ।।

ଏ ଫସଲର ବାସ୍ନା ବାରେ, ଅଛି ତାର ଗଂଧ,
ଅଛି ଏକ ଦରଛୁଆଁ ମୂଲ୍ୟହୀନ ସ୍ୱର୍ଣ୍ଣ,
ଧଳା ଧଳା ପଥର ସଂଧିରେ ବାଲି ଛତୁ ଫୁଟେ,
ପୋଡ଼ିଛନ୍ତି ଖରା ତେଜସ୍କ୍ରିୟ ପୋକ ।।

ପିମ୍ପୁଡ଼ିଙ୍କ ଧାଡ଼ି ଲାଗେ, ଉତ୍ତେଜିତ ଲୋକ,
ଦୂରରେ ଅଜସ୍ର ଟ୍ରକ୍, ଟ୍ରେନ୍, ମାଲଗାଡ଼ି,
ଜାହାଜ ବୋହେଇ ପାଉଁଶ ବସ୍ତାରେ
ମୃତ୍ୟୁର ବଣିକମାନେ ଖୋଲିଛନ୍ତି ବିଯୁକ୍ତି ବଜାର
ବିକିବାକୁ ଯୋଗଫଳ, ବର୍ଗଫଳ, ଅଂକର ଫସଲ,

(ଓ ଭୁଲର ମଶାଲ ଗଢ଼ିବାକୁ ଆଉ ଏକ ଭୁଲ)

ପୋଡ଼ିଛନ୍ତି ଖରା ଗଛ, ବୃକ୍ଷ, କାଠ ।।

ସେମାନେ ଜାଣଂତି ନାହିଁ ମୃତ୍ୟୁ କେତେ ଦୂର,
ଜୀବନ ବା କେତେ ନିକଟରେ
ନିବୁଜ ପୃଥିବୀ ମଧ୍ୟେ ଶ୍ରେଷ୍ଠ ଶ୍ରେଷ୍ଠ
ଜୀବନର କଣା,
ଯେ ପୃଥିବୀ ଯାଇଛି ସବୁଜ ବଖରା—
ଯେଉଁଠି ନିଃଶ୍ୱାସ ନେବା କଷ୍ଟ ।
ପବନେ ବିଭିନ୍ନ ଗ୍ୟାସ୍, ରକ୍ତର ତୋଫାନ,
ହାଡ଼ର ଅଂଗାରେ ଭରି ସବୁ ଷ୍ଟାଡ଼ିୟମ,
ଶତଛିଦ୍ର ଓଜୋନ ବଳୟ ।
ପୃଥିବୀ ପାଲଟେ କ୍ରମେ ଉଦ୍‌ଭିଦହୀନ, ଏକ ମରୁଭୂମି,
ଛିନ୍ନମୂଳ ସକଳ ଜୀବନ ।।

ତା ସାଂଗକୁ ଅଛି ପୁଣି ନାନା ବାଦ, ଚ୍ଛେଦ,
ମଣିଷଠୁଁ ମଣିଷର ସବୁଠୁ ବିପଦ ।
ଦୁଇ ପାହାଡ଼ ମଝିରେ ସୂର୍ଯ୍ୟ ଆସେ ଉଠି ।
ଷସ୍ତମାନ ଜଂଗଲରେ ପଶୁଙ୍କ ହେଂଟାଳ,
ପୃଥିବୀରେ ଜନ୍ମ ଲଭେ ଏକ ନୂଆ ଜୀବ—
ମଣିଷ ରୂପରେ ଯାହା ଏକ ଜାନୋଆର ॥

□□□

ତା ୨୧ । ୮ । ୯୦
ମିସନ୍ ରୋଡ୍, କଟକ-୧

# ପରଜନ୍ମ

ଯଦି ଥାଏ ପରଜନ୍ମ, ଥାଆନ୍ତି ଈଶ୍ୱର
କରେ ମୁଁ ପ୍ରାର୍ଥନା ଅନୁକ୍ଷଣ—
ପ୍ରଭୁ ମୁଁ ଯେପରି ଆଉ ନହୁଏ ଜନମ
ପୃଥିବୀରେ...ଏ ଦୁଷ୍ଟ ଗ୍ରହରେ,
ଯେଉଁଠି ନିଃଶ୍ୱାସ ନେବା କଷ୍ଟ, ଦୂଷିତ ପବନ ॥

ସତେ କେଡ଼େ ଭୟଂକର ଏ ମଣିଷ
କି କଦର୍ଯ୍ୟ ତା'ର ହାଲଚାଲ !
ଦିନେ ବି ତ ରହିବାକୁ ବଂଚ – ଏଠି ବଳେ ନାହିଁ ମନ ।

ହତ୍ୟା ଓ ଶୋଷଣ, ସ୍ୱଜନ ନିଧନ ଯହିଁ ପରମାର୍ଥ,
ଘରେ ଘରେ ଶୁଣାଯାଏ ପଶୁର ହେଂକାଳ ।

ମାଆ କରେ ଶିଶୁବଧ ଲାଲସା ପୂରଣେ
ଯେଣୁ ନିସ୍ପଦ ॥

ପ୍ରତିଦିନ ଖବରକାଗଜ ଦେଇଯାଏ ଭୀଷଣ ଖବର ॥
ମଣିଷର ବୁଦ୍ଧିବୃତ୍ତି, ଶିକ୍ଷା ଓ ଅସ୍ତ୍ର
ପାଲଟିଛି ବିଶ୍ୱାସଘାତକ ।

ଯବୁ ହୃଦୟର ଆଜି ନୀତିବାଦ ରକ୍ଷିତସ୍ୱାର୍ଥର ।
ଧର୍ମ ନାମେ ରକ୍ତ-ହୋଲି, ଯେ ଧର୍ମର ପରିଭାଷା
ଧୂଆଁର କୁଣ୍ଡଳୀ !!

ଦେଶ ନାମେ ଗଣହତ୍ୟା ଯେଉଁ ଦେଶ ଖା'ଲା ଗୋଡ଼ବାଲି
ଅଗଣିତ ବୁଭୁକ୍ଷୁ ପାଖରେ, ନାହିଁ ଯା'ର ଇଂଚେ ହେଲେ ସ୍ଥାନ ।
ଭାଷା ଯୁଦ୍ଧେ ଭାଷା ସହ ମୂର୍ଖଂକ ଡାକରେ
ଜଗ୍ୱାହେ ପଡ଼ଂଥ ବଳି ବହୁଳ ସଂଖ୍ୟାରେ ।
ଏ ସବୁ ତ ନୁହେଁ ଶୁଣାକଥା, ସବୁ ଅଂଗେ ଲଭାଇବା ଭଲ ।
ସତ୍ୟ ଆଜ ଛଦ୍ମବେଶୀ, ମିଥ୍ୟା ବହୁରୂପୀ,
ଢାଂକିବାକୁ ଗୋଟିଏ ମିଥ୍ୟାକୁ ହଜାର ମିଥ୍ୟାର ଦରକାର ॥

ପୁଣି ଦେଖେଁ କି ସୁଂଦର ଏ ପୃଥିବୀ ସତେ !
କି ସୁଂଦର ଏ ଋତୁଚକ୍ର; ବୃକ୍ଷଲତା ଫୁଲ,—ନଦୀ ଓ ପର୍ବତ
ଶସ୍ୟରେ ଶ୍ୟାମଳା ବସୁଂଧରା, ଅଭ୍ର ଶୁଂଢ଼ ଢାଂକେ
ବନ-ଜ୍ୟୋଛନା ॥

ହେଜ ସମୁଦ୍ର କୂଳ, ପ୍ରସନ୍ନ ପ୍ରାଂତର
ମେଘେ ମେଘେ ଢାଂକଛି ଅଂବର ।
ମନେହୁଏ ସବୁ ଏକ ଭୁସ୍କାବାଜି ଖେଳ।
ଘୃତ ଘାସଫୁଲେ ଦେଖେ କରୁଣାର କଣା,
ଭୋ'ରର ଶିଶିର !!

ଅଂତରଂଗ ଏଇ ପୃଥିବୀକୁ ଛାଡ଼ିଯିବା ପାଇଁ
ମନେ ଜାଗେ ଦ୍ରୋହ,
ଦେଖେଁ ପୁଣି ମୋହମୁଗ୍ଧ ମଣିଷ ସଂତାନ
ଟାଣେ ମୋତେ ଗୂଢ଼ ଆକର୍ଷଣେ—
ଲକ୍ଷେ ଉଠୁଛି ଯିଏ ବ୍ରହ୍ମାଂଡରେ
ରଚ ନୂଆ ସମ୍ଭାବନା ଚକ୍ର;
କେବେ ଯଦି ଚଂଦ୍ରର ପୃଷ୍ଠରେ, କେବେ ଅବା ମେଘର ବଳୟେ !

ହେଲେ ନାହିଁ ସ୍ଥିର ଓ ନିଶ୍ଚିତ; ଯିଏ ମୋତେ ଟାଣିନେବ,
ତା' ପାଖକୁ, ଏହାହିଁ ତ ଜୀବନର ଅର୍ଥ
ଚାଲିବାର; ବଢ଼ିବାର, ଗଢ଼ିବାର ସ୍ୱପ୍ନ
ସ୍ନେହ ପ୍ରେମ ମମତାର ଉତ୍ସ ହୋଇ ଫଲ୍‌ଗୁ ଧାର
ସିକ୍ତ କରେ ପ୍ରାଣ ।।

ଅନ୍ୟାୟର ସଙ୍ଗେ ଧର୍ମଯୁଦ୍ଧ, ନ୍ୟାୟ ପାଇଁ
ପ୍ରାଣ ବଳିଦାନ,
ଯେ ନ୍ୟାୟର ଅନ୍ତରାଳେ ଅନ୍ୟ ପ୍ରତି ନ ହେବ ଅନ୍ୟାୟ ।
ଏ ମଣିଷ ସେ ମଣିଷ କେତେ ଯେ ତଫାତ୍‌,
କେତେ ବ୍ୟବଧାନ !!

ଏକ ଅଙ୍ଗେ ବିଶ୍ୱାସର ସେତୁ, ମମତାର ଭରା ପୂର୍ଣ୍ଣକୁଂଭ,
ଅନ୍ୟ ଅଙ୍ଗେ ଘାତକର ଖଡ୍‌ଗ, ତଂତ୍ରର କୁତ୍ସିତ ଚକ୍ରାଂତ,
ଅଶିକ୍ଷା, ଅଂଧାର, ବ୍ୟାଧି, ବ୍ୟଭିଚାର, ଅଭାବର ଜ୍ୱାଳା,
ଉଚ୍ଛିଷ୍ଟ ଗୋଟାଇ ଖାଏ ମଣିଷର ପିଲା
ନର୍ଦ୍ଦମାର କଡ଼େ,
ଅନ୍ୟ ଅଙ୍ଗେ ଶୋଷକ ପ୍ରାସାଦେ ଅପସଂସ୍କୃତିର ନଗ୍ନ କ୍ରୀଡ଼ା—
ମଣିଷ କରୁଛି ସୃଷ୍ଟି କଳା ଓ ବିଜ୍ଞାନ,
ସୃଜନର ନବ ନବ ସଂଧି
ସେଇ ପୁଣି ଗଢ଼ୁଅଛି ସମୂହ-ଧ୍ୱଂସର ଉପାଦାନ,
ଅଣୁ-ଅଭିଯାନ, ଯେ ଯୁଦ୍ଧରେ ଜୟ ପରାଜୟ କିଛି ନାହିଁ,
ଅଛି ଖାଲି ସମୂହ-ଶ୍ମଶାନ !!

ଏଭଳି ବିଶ୍ୱରେ କହ କିପାଇଁ ଜୀବନ !
କିଏ ଜାଣେ କେଉଁଠାରେ ହେବ ତା' ଜନମ ?
ସବୁ କିଛି 'ଦୈବାୟତ୍ତ' ମଣିଷର ନାହିଁ କିଛି ହାତ ।

।। ଦବିତା ୧୯୯୦ ।।

ମୁଁ କ'ଣ ଜାଣିଛି ମୁଁ ଆସିଲି କେଉଁଠୁ ଏବଂ
କେଉଁଠାକୁ କରିବି ପ୍ରସ୍ଥାନ ?
ସେତିକ ପାଇଲେ ଜାଣି ଜୀବନଟା ହୋଇଥାଂତା
ଅମୃତ ସୋପାନ ।

ଏବଂ ସଂସାରଟା ଗୋଟିଏ ଉଦ୍ୟାନ !

ତେଣୁ କହେଁ ପ୍ରଭୁ ଯଦି ଥାଏ ଜନ୍ମାଂତର
ମୁକ୍ତ କର ମୋତେ ସେ ବଂଧନୁ,
ରହେଁ ମୁଁ ସ୍ୱାଧୀନ ହେଇ, ସ୍ଥାନ ଆଉ ସମୟ ବାହାରେ;
ହୋଇଯାଏଁ ଅସୀମରେ ଲୀନ !!

□□□

ତା ୨୭ । ୯ । ୮୯

ମିସନ ରୋଡ୍; କଟକ-୧, ୩୦୦୧

# ଗୁଣମୁଗ୍ଧ

ସମସ୍ତେ ଲେଖନ୍ତି 'ଗୁଣମୁଗ୍ଧ' ଟିପ୍ପଣୀ ଶେଷେ
'ଇତି' ଲେଖିସାରି,
ମୁଁ ଯେ ବହୁ ସଦ୍‌ଗୁଣ ନିଧାନ
ଏଥିରେ ସଂଦେହ ନାହିଁ କିଛି,
କାରଣ ତା' ହୋଇଛି ଲିଖିତ ବହୁ ମାନପତ୍ରେ,
ତାମ୍ର ଫଳକରେ,
ଏବଂ ହୋଇଛି କୁହା ତେଜସ୍ୱୀ ଭାଷଣେ
ସଭା ସମିତିରେ ଯା'ର ସଂଖ୍ୟା ନାହିଁ,
ସବୁ ଏବେ ହାଓ୍ୱାରେ ଗର୍ଭିତ ॥

ମାତ୍ର ମୋ'ର ଘରେ ଚାଲିବା ବଢ଼ି ବଢ଼ି ଗଲେ,
କ୍ରମେ ହୁଏ ସ୍ଫୀତ,
ଯୋଡ଼ାହୁଏ ଯେତେବେଳେ ସେଥିରେ 'ଉଦାର',
'ମହାମନା', 'ଅକୃପଣ' ଆଦି ବିଶେଷଣ,
ଯେପରି କି ଗଣେଶପୂଜାର ଚାନ୍ଦା ଆଦାୟ କାଳରେ ॥

ମୋ'ର ମଧ୍ୟ ରହିଅଛି ଦୁର୍ଗୁଣ ଅସଂଖ୍ୟ
ଜାଣେ ଭଲ କରି, ଅନ୍ୟ କେ ନଜାଣୁ,
କ୍ଷଣକୋପୀ, କ୍ଷଣତୋଷୀ ଜମାସ୍ଥା ମଣିଷ,
ପାରେ ନାହିଁ କରି ମୁଁ ସାଲିସ୍, ବଡ଼ ଅସହାୟ,
ପାଇଛି ପ୍ରମାଣପତ୍ର ସ୍ତ୍ରୀଙ୍କ ମୁହଁରୁ ॥

ଘୃଷଣ ଲଗାମଛଡ଼ା, ବେପରବା ଲୋକ,
ଦୁଷ୍କୃତଂକୁ କାଳ, ଦୁର୍ଜନର ସଂଗେ ହାତାହାତ,
ଖୋସାମଦ ନାହିଁ ମୋ' ଜାତକେ, ସେଇଥାହିଁ ବଡ଼
ବଦଭ୍ୟାସ ଓ ଧର୍ତବ୍ୟ ଅପରାଧ ଏକ ॥

ଭାବେଁ ଏ ସବୁ ମୋ' ସିଂହରାଶି ଫଳ ।
ଭଲ ମଂଦ ଚହ୍ନୁତ ଗୁଣରେ ମୁଁ ଅଧିକାରୀ ।
ତ୍ରିଗୁଣ ରଜ୍ଜୁରେ ବଧା ମୃଗୀ ପରି
ନାଚ କୁଦ ବୁଲେ ଏ ସଂସାରେ
ସତ ନ ପାରୁସ୍ତ, କରେଁ କିଛୁ କାର୍ଯ୍ୟ ଏଣୁତେଣୁ ।
ଜାଣେ ନାହିଁ ପୁନର୍ଜନ୍ମ ହୁଏ କ ନା ମୋ'ର ॥

ମାତେ ଭାବେଁ ହେବାକୁ ମୁଁ ସମ୍ପୂର୍ଣ୍ଣ ନିର୍ଗୁଣ,
ଗୁଣାତୀତ, ଭଲ ମଂଦ, ପାପ ପୁଣ୍ୟ ବୋଲି ଯାହା ଜାଣ୍ଡୁ
ସବୁର ହାତରୁ ଲୋଡ଼େ ମୁକ୍ତ, ହେବାକୁ ଉଦ୍ଧାର ॥

ଭାବେଁ ମୁଁ ହେବାକୁ ନିରାସକ୍ତ ଯେଉଁପରି ପଦ୍ମପତ୍ର ଜଳେ,
ଭାବେଁ ମୁଁ ହେବାକୁ ମହାକାରଣରେ ଲୀନ,
ହେବା ପାଇଁ ସୃଷ୍ଟିର କାରଣ,
ପ୍ରଳୟ ପ୍ରପୟୋଧି ଜଳେ ବଟପତ୍ର ପରେ
ଭାସୁଥାଏ ଯେଉଁପରି ସୃଷ୍ଟିର ବୀଜାଣୁ,
ପରମ କାରଣ ॥

□□□

୨୪ । ୧୦ । ୮୯
କଟକ-୧

# ସମୟର ହସ

ସମସ୍ତ ହସ୍ତରୁ ମୁକୁଟରେ
ଫିଂଗୁଅଛୁ ଶ୍ୱେତପଦ୍ମ ଏକ ପରେ ଏକ,
ଧ୍ୱଂସର ଅସୁର ଲୀଳା, ସର୍ଜନାର ନବତମ ଶୃଂଗ
ଲିପିବଦ୍ଧ ପାଇଁ ॥

ଏକ ଆଡ଼େ ଭଗ୍ନସ୍ତୂପ, ଅନ୍ୟଆଡ଼େ ନିର୍ମାଣର ଚୂଡ଼ା
ଅଶ୍ୱର ଚିତ୍କାର ସଂଗେ ଭଂଗା ନୂପୁରର ଆର୍ତ୍ତନାଦ
କେଉଁ ସ୍ୱପ୍ନ ବାସବଦତ୍ତାର,
ବିଷାଏ ଆକାଶ ॥

ମଣିଷ ମରୁଛି ଅପ୍ରମାଣ,
ମଣିଷ ଉଠୁଛି ପୁଣି ଚଂଦ୍ରର ପୃଷ୍ଠରେ
ଆଂକ ତାର ପାଦଚିହ୍ନ ଇତିହାସ ଦାନକିପି ପରେ,
ମୂର୍ଦ୍ଧନ୍ୟ ପୃଷ୍ଠାରେ ॥

ମହାକାଳ ଅକ୍ଷି ମିଁଚିକାରେ ସବୁ ଯାଏ ଲଭି,
ସମୟର ବେଳାଭୂଇଁ ନେଇଯାଏ ସବୁ କଛି ପୋଛି ॥

ଫିଂଗିଦିଏ ପୁଣି ପରକ୍ଷଣେ ନିର୍ଧୁମ ବାଲିରେ
ଅସଂଖ୍ୟ ଅସଂଖ୍ୟ ମୃତଦେହ,
ଭିକ୍ଷାଥାଳ, ବିଦୀର୍ଣ୍ଣ ମୁକୁଟ
ହେବା ପାଇଁ ନବଗ୍ୱେଷଣର ସାର ॥

ଗଢ଼ି ଉଠେ, ଭାଂଗିଯାଏ, ପୁଣି ଗଢ଼ିଉଠେ
ଅସଂଖ୍ୟ ଅଟ୍ଟାଳି, ପାର୍କ, ପରୀକ୍ଷା ଆଗାର,

ରାଜ୍ୟ ଓ ସାମ୍ରାଜ୍ୟ ପିଂପୁଡ଼ିଂକ ଘର,
ମହାଶୂନ୍ୟେ ମାଳ ମାଳ ବ୍ରହ୍ମାଂଡ଼ ଭୂଗୋଳ,
ତା ମଧ୍ୟରେ ଅତି କ୍ଷୁଦ୍ର ଗୋଷ୍ପଦ ପ୍ରମାଣେ ପୃଥିବୀର କୋଣେ
ରୁଲେ ମହାମୂର୍ଖ ॥

ବହୁ ମତ, ବହୁ 'ବାଦ', ଆତଂକ ଓ ବଳିଦାନ,
ବହୁ ରେଖା, ବହୁ ଅଂକ, ସମସ୍ୟା ମଧ୍ୟରେ,
ସ୍ୱାଧୀନ ଓ ପରାଧୀନ, ଜୀବନର ଜୀବନ ସଂଗରେ
କେତେ ହିଂସା, କେତେ ଦ୍ୱଂଦ୍ୱ, କେତେ ନା ଦୁର୍ଗଂଧ
ମୁଂଡ଼ ଟେକେ, ପରକ୍ଷଣେ ହେବା ପାଇଁ ଧୂଳି,
କେତେ ବା ସ  ପଡ଼ି ବାଡ଼ ହୁଏ ଯେଣେ ଠୂଳୀଭୂତ ଜୀବନର ଘର,
ରଖି ମାତ୍ର ଆଠ ଫୁଟ ସ୍ଥାନ ଖାଲି ମଣିଷର ପାଇଁ
ଯଥେଷ୍ଟ ଯା ହେବାକୁ କବର ॥

ତଥାପି ମଣିଷ ବଂଚେ ତଥାପି ମଣିଷ ମରେ,
ତଥାପି ତ ସୂର୍ଯ୍ୟ ଉଠେ, ହସେ ବନସ୍ଥଳୀ ।

ମହାକାଳ ହସେ ଆଖି ଠାର ॥

□□□

ତା ୧୧-୮-୧୯୮୯

ମିସନ ରୋଡ୍, କଟକ-୧

# ନିର୍ବାଚନ

ନିର୍ବାଚନ ଆସୁଛି ପାଖେଇ—
ଚାଲୁଛି ରିହର୍ସାଲ୍‌, ନାଚୁଛଂତି
ସମସ୍ତ କଂଢେଇ ଦେଶୁଚା ଯାଙ୍କରେ ।

ସହରର ସମସ୍ତ ପିଂପୁଡ଼ି
ଚଢ଼ୁଛଂତି ମିନାର ଉପରେ
ଦେଖିବାକୁ ଭୋଟ-ବାଜିଖେଳ ।

ଗାଆଁ ଗହଳରେ —
ବେଂଗମାନେ ଛତା ଧରି ଯାଂଛି ପଟୁଆରେ ॥

ଚାରିଆଡ଼େ ଭୋଟ୍‌-ଗୋଳ,
ଥିଲ ଯା' ସ୍ୱଗତ କାଲି ଆଜି ତା' ଚିତ୍କାର
ସଭାମଂଚ ପରେ, ତନ୍ଦ୍ରା ପଡ଼େ କାନ ।

ଭରିଯାଏ କାଂଥବାଡ଼ ପ୍ରଚୁର ପତ୍ରରେ, ବର୍ଣ୍ଣାଶୁଦ୍ଧି ପୂର୍ଣ୍ଣ ।
ସ୍ୱପକ୍ଷର ବେଲେ ନେପଥ୍ୟେ ପଲାଏ ବ୍ୟାକରଣ ।

ଚାରିଆଡ଼େ ସ୍ୱାଗତମ୍‌, ବନ୍ଦନ୍ଧ ତୋରଣ ।
ଆସୁଛଂତି 'ମାଛିଂଙ୍କ ସମ୍ରାଟ'
ବାଟ ଛାଡ଼, ଆରେ ବାଟ ଛାଡ଼ ॥

ବନ୍ଧୁ କସମର ଚିହ୍ନ,—ହାତ ଓ ଲଂଗଳ
ଦାଆ, ଲଣ୍ଠଣ, ଛତା, ସାଇକେଲ,
ସ୍କୁଲଘର ପାଖେ ଦୀପଶିଖା, ପେଗ୍ଭ ଓ ମୟୂର
ସହଅବସ୍ଥାନେ ସମାସୀନ ॥

ଯେତେ ସବୁ ଫଂପା କଥା, ଶିଳାନ୍ୟାସ, ପୋଲ ଉନ୍ମୋଚନ
ବେଳେ, (ଯେଉଁ ପୋଲ ଭାଂଗି ପୁଣି·ବନେ ପାଂଚଥର)
ଆଜି ଅର୍ଥହୀନ ॥

ନାସ୍ତି ଆଉ ହରିଜନ ଆଦିଂକ ସକାଶେ ବାରଂବାର,
ଅଶ୍ରୁବିମୋଚନ
ସବୁ ଆଜି ପ୍ରଶ୍ନବାଚୀ, ବାଷ୍ପୀୟ ବଚନ !

ଅନ୍ୟ ଆଜେ, ଗୋରୁଂକ ସୁରକ୍ଷା ପାଇଁ
ପ୍ରାୟୋପବେଶନ,
ନଲକୁଅ ଓ ଦ୍ୱିତୀୟ ବନସ୍ପତି ତେଲ
କାରଖାନା ପାଇଁ ଧାରଣା ଓ ବଂଦ ପାଳନ,
ଗଣତଂତ୍ର ସପକ୍ଷରେ ଦୃଢ଼ ରାୟ ଦଏ ॥

ବନ୍ଧୁ ମତ ବନ୍ଧୁ ଧ୍ୱଜା, ବନ୍ଧୁ ସୀମା କରଂଛ ଲଢ଼େଇ—
ମୂର୍ଚ୍ଛଂତ ପରସ୍ପରେ ହେବାକୁ ବିଜୟୀ ॥

ଜମିଆସେ ଏଣେ ବେଶ୍ ଭୋଟର ବଜାର !

ଅପ୍ରମାଦ ଅସ୍ତ୍ର ରଣଝଣ
ସମସ୍ତଂକୁ କରୁଚି ବ୍ୟାକୁଳ,
ସବଂଶେ ଭାଗ୍ୟାହିଁ ତ ଜଣକ କାରଣ ! !

ଧମାଏ ଲଢ଼ଂଛ ଯୁଦ୍ଧ ଗଣକଂଙ୍କ ନାମେ
ଲକ୍ଷ ଲକ୍ଷ ଟଂକାର ପାରଣା,
ଜିତିଲେ ଭୋଗିବେ ମଜ୍ଜା, ହୋଇବ ଭରଣା
ମାସ କେଇଟାରେ, ହାରିଗଲେ କିଛି ନୁହେଁ ଊଣା,
ଅଛି ବନ୍ଧୁ ସ୍ନେହ ଗଳା, ଚିବନା କପାଇଁ !!

ଆସିଲେଣି ସବ ଦେବାଦେବୀ ସ୍ୱର୍ଗ ରୁ ଓହ୍ଲାଇ,
ମର୍ତ୍ତ୍ୟରୁ ବି କିଛୁ ନେତା, ଯଜ୍ଞର ପ୍ରସ୍ତୁତି
ଚୂଲେ ଘମାଘୋଟ, କାଷ୍ଠ ଆଉ ଘୃତ ସବୁ ମହଜୁତ ।

ଯଜ୍ଞ ଶେଷେ ସ୍ୱସ୍ଥାନକୁ ସର୍ବେ ଯିବେ ଚଳି ॥

ଗାଂଧି ଓ ଜହର, ଗର୍ବାଚେଭ, ମାଓ, ଷ୍ଟାଲିନ, କ୍ରୁଷ୍ଚେଭ
କା'ର ରକ୍ଷା ନାହିଁ ଆସିଛଂତି ସର୍ବେ ଟଣା ହୋଇ—
ଏ ଜଂବୁଦ୍ୱୀପକୁ ନେବା ପାଇଁ ଭେଟ ॥

ଯହିଁ ଦେଖ ତାଂକର ଉଦ୍ଧୃତ, ତାଂକ ନାମାବଳୀ ।

ଜେ. ପି, ଭି.ପି. ଆବର "ଲେଟସ୍" ସର୍ବେ ଉଚ୍ଛ୍ୱସିତ,
ଅଶୀରୁ ଅଠର ଯାଏଁ ସମସ୍ତେ ତତ୍ପର !!

ସବୁ ଦେଖି ଶୁଣି
ଗାଂଧିଜୀଂକ ତିନୋଟି ମାଂକଡ଼
ବସିଛଂତି ଗୁମ୍ ମାରି, କରିବେ ବା କ'ଣ !

ଜଣେ ବୁଜି ଆଖି, ଜଣେ କାନ, ଆଉ ଜଣେ ମୁହଁ
ଆପଣା ହାତରେ ॥

ଜମିଉଠେ ଖେଳ, ହାଓ୍ୱା ଗରମ ।

ପାଂଚ ବରଷରେ ହୁଏ ଭୋଟ-ରଂଗଲୀଳା
ଯା'କୁ କହୁଁ ଆମେ ନିର୍ବାଚନ ॥

□□□

ତା ୧୮ । ୮ । ୮୯
କଟକ-୭୫୩୦୦୧

# ଦୃଶ୍ୟାଂତର

ଦୃଶ୍ୟମାନ ଜଗତରେ ଯାହା ଦେଖେ ସବୁ ଯଦ ମାୟା,
ସବୁ ଯଦ ମନର ଉଆଣ,
କେତେଦୂର ସ୍ୱାଧୀନ ସେ ମନ ?
ନୁହେଁ କ ତା' ବାହାରର ବସ୍ତୁ ଜଗତର
ମନନ, ଉଂଛନ ଆଉ ସାର ସକଳନ ?
ଦୃଶ୍ୟ ଲଭେ ଦୃଶ୍ୟାଂତରେ,
ବଦଲାଏ ପଟ,
ଯେଣୁ ତାହା ଅସ୍ଥାୟୀ ଅସ୍ଥିର—
ଗଢ କେଉଁ ଆଲୋକିତ ଅଂଧାରର ମଂଚେ
ଯେଉଁଠାରେ ଦୃଶ୍ୟ ଓ ଅଦୃଶ୍ୟ
ସମସ୍ତ ସମାନ, ସବୁ ଏକାକାର,
ନିରପେକ୍ଷ ଯେପରି ଆକାଶ ।
ଯଦଚ ତା' ବହୁର ବଡ଼ଂବଣା,
ଭାଗ୍ୟର ବଦ୍ରୂପ ॥

ଯା' କହୁ ସ୍ୱରୂପ ଜାଣେ ସବୁ ଅସମ୍ପୂର୍ଣ୍ଣ,
ଦୃଷ୍ଟି କ'ଣ ଛୁଇଁପାରେ ସୁଂଦରର ସୀମା !
ନଥାଏ ତହିଁରେ ଯଦ ସ୍ମୃତିର ସ୍ୱାକ୍ଷର !
ଦୃଶ୍ୟ ଆଉ ଅଦୃଶ୍ୟ ମିଳନେ
ଜନ୍ମ ଲଭେ ନବ ଦୃଷ୍ଟି
ତୃତୀୟ ନୟନ
ଭାଂଗି ଦେଖା ଅଦେଖା ମଧ୍ୟରେ
ଯେତେକ ବ୍ୟବଧାନ ॥

□□□

ଡସେଂବର ୩୦, ୧୯୯୦
କଟକ-୧

# ଚିର ପ୍ରଦୀପ୍ତ

ନାଆଁକୁ ମାରିବ କେଉଁପରି ତୁମେ ? ନାଆଁ କିରେ କେବେ ମରେ ?
(ଏଠି ଲିଭିଗଲେ ସେଠି ସେ ଜଳିବ ପୁଣି ନୂଆ ଅଂଗୀକାରେ)
ସ୍ୱପ୍ନ ଝଡ଼କୁ କରିବ ବଂଦୀ ତୁମରି ଅସ୍ତ୍ରାଗାରେ ?

ଉଚ୍ଛ୍ୱାସକୁ ସ୍ୱରର ପାଞ୍ଜେ ବଂଦୀ କରିବ ତୁମେ !
ଆରେ ହତଭାଗା ସ୍ୱର୍ଗ-ଶିକାରୀ ! ବସିଛ ଶାସକ ନାମେ !

ଶୁଣି ସବୁଦିନ ଶୁଣି ।
ବଜ୍ରକଣ୍ଠ ତାର ମୋ ଦେଶ ତରୁଣ—ବିଧାତାର ଶୁଭ-ବାଣୀ ।।”

(“ଚିର ପ୍ରଦୀପ୍ତ”)

# ପୂର୍ବାଭାସ

ଗତ ୧୯୬୯ ମସିହାରେ ସାରା ପୃଥିବୀରେ ଏକ ଅଭୂତପୂର୍ବ ଛାତ୍ର ଆନ୍ଦୋଳନ ଦେଖାଦିଏ । ଆମେରିକା, ଇଂଲଣ୍ଡ, ଫ୍ରାନ୍ସ ପ୍ରଭୃତି ଦେଶର ଛାତ୍ରସମାଜ ମଧ୍ୟରେ ଏକ ସଂସ୍ଥାବିରୋଧୀ ମନୋଭାବ ପରିଲକ୍ଷିତ ହୁଏ । ତାର ପ୍ରଭାବ ଭାରତ ବର୍ଷ ତଥା ଓଡ଼ିଶାରେ ଅନୁଭୂତ ହୁଏ ।

୨୨-୮-୬୯ ତାରିଖରେ କଟକର ଶ୍ରୀରାମଚନ୍ଦ୍ର ମେଡ଼ିକାଲ କଲେଜର ଛାତ୍ରମାନେ ଭୁବନେଶ୍ୱରଠାରେ ଏକ ଶାନ୍ତି ପୂର୍ଣ୍ଣ ଶୋଭାଯାତ୍ରାରେ ଯାଉଥିବାବେଳେ ପୁଲିସ୍ ସେମାନଙ୍କୁ ନିର୍ମମ ଲାଠି ପ୍ରହାର କରେ । ତାର ପ୍ରତିବାଦରେ କଟକ ରେଭେନ୍ସା କଲେଜର ଛାତ୍ରମାନେ ଏକ ଶୋଭାଯାତ୍ରା ବାହାର କରିବାକୁ ଉଦ୍ୟମ କରନ୍ତି । କଟକର ଅନ୍ୟାନ୍ୟ କଲେଜର ଛାତ୍ରମାନେ ମଧ୍ୟ ସେମାନଙ୍କ ସହିତ ଯୋଗ ଦିଅନ୍ତି । ପୁଲିସ ରେଭେନ୍ସା କଲେଜ ହତା ଭିତରେ ପଶି ଛାତ୍ରମାନଙ୍କ ଉପରେ ଆକ୍ରମଣ କରେ । କଲେଜ ଅଧ୍ୟକ୍ଷ ଓ କେତେକ ଅଧ୍ୟାପକ ଏଥିରେ ବାଧା ଦେବାରୁ ସେମାନଙ୍କୁ ପୋଲିସ ବାହିନୀ ଅପମାନିତ କରେ ଏବଂ ଛାତ୍ରମାନଙ୍କୁ ଅନ୍ଧାଧୁନ୍ଦା ମାଡ଼ ଚଢ଼ାଏ । କଟକ ଖ୍ରୀଷ୍ଟ କଲେଜର ଜଣେ ଛାତ୍ର ଶ୍ରୀ ପ୍ରଦୀପ୍ତ କୁମାର ମିଶ୍ର ପୁଲିସ-ମାନଙ୍କୁ ଅଟକାଇବା ଉଦ୍ଦେଶ୍ୟରେ ରେଭେନ୍ସା କଲେଜ ଫାଟକ ବନ୍ଦ କରିବାକୁ ଯାଏ । ଏହି ସମୟରେ ପୁଲିସ ପିସ୍ତଲ ଚଳାଇ ପ୍ରଦୀପ୍ତକୁ ହତ୍ୟା କରେ । ପ୍ରଦୀପ୍ତର ଶବଶୋଭାଯାତ୍ରାରେ କଟକ ସହରର ପ୍ରାୟ କୋଡ଼ିଏ ହଜାର ନାଗରିକ ଖାନନଗର ମଶାଣି ପର୍ଯ୍ୟନ୍ତ ଯାଇ ତାଙ୍କୁ ଶେଷ ସମ୍ମାନ ଜଣାନ୍ତି ।

ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି ପାଟଣା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ । ରାଜା ରାଜୁଡ଼ାମାନେ ନିଜ ନିଜ ରାଜ୍ୟ ଓଡ଼ିଶାରେ ମିଶିଯିବା ପରେ ସେଠାରୁ ଲୋକ ପ୍ରତିନିଧି ରୂପେ ନିର୍ବାଚିତ ହୋଇ ଓଡ଼ିଶା ବିଧାନ ସଭାରେ ସ୍ଥାନ ଦଖଲ କରିଥାନ୍ତି ।

ରେଭେନ୍ସା କଲେଜର ପ୍ରଧାନ ଫାଟକ ନିକଟରେ ପ୍ରଦୀପ୍ତର ଏକ ସ୍ମୃତିସ୍ତମ୍ଭ ସ୍ଥାପନ କରାଯାଇଛି । ଏହି ସ୍ମୃତିସ୍ତମ୍ଭଟି ମୁଁ ଉଦ୍‌ଘାଟନ କରିଥିଲି । ପ୍ରଦୀପ୍ତ ଏ ଦେଶର ତାରୁଣ୍ୟର ଯେ ଏକ ଶ୍ରେଷ୍ଠ ମୂର୍ତ୍ତି ଏଥିରେ କୌଣସି ସନ୍ଦେହ ନାହିଁ । ପ୍ରଦୀପ୍ତ ସମ୍ବନ୍ଧରେ ଲିଖିତ କବିତାଗୁଡ଼ିକ ସେତେବେଳେ 'ମାତୃଭୂମି' ଓ ଅନ୍ୟ କେତେକ ପତ୍ରିକାରେ ପ୍ରକାଶ ପାଇଥିଲା ।



# ଚିର ପ୍ରଦୀପ୍ତ

ମାରନ୍ତି ଯାହାକୁ ହାରନ୍ତି ତାହାଠୁ ଆରେ କାପୁରୁଷ ଦଳ !
ମୁକୁଟ ତୁମର ଖସିପଡ଼ି ଲୁଟେ ତାହାର ଚରଣ ତଳ ।
ସାମନା ତାର ତ କରିବାକୁ ତମ ଗ୍ରୀବରେ ନ ଥିଲ ବଳ ।
ନିରସ୍ତ୍ର ତାର ମୁକୁଳା ପିଠିରେ ଦାଗିଅଛ ପିସ୍ତଲ ।
ନିଆଁକୁ ମାରିବ କେଉଁପରି ତୁମେ ? ନିଆଁ କରେ କେବେ ମରେ ?
(ଏଠି ଲିଭିଗଲେ ସେଠି ସେ ଜଳିବ ପୁଣି ନୂଆ ଅଂଗୀକାରେ । )
ସ୍ୱପ୍ନ ଝଡ଼କୁ କରିବ ବଂଦୀ ତମର ଅସ୍ତ୍ରାଗାରେ ?
ନିଜେ ତ ଦେଖିଛ ଗୋଟାଏ ପିଲାର ତୋଫାନରେ ଗଲ ଉଡ଼ି
ତମ ଲୁଚି ଲୁଚା ଫଉଜ ରାଇଜ ପାଟଛତା ସୁନାବାଡ଼ି ।
ଉଡ଼ିଗଲ ତମ ହାତୀ ଘୋଡ଼ା ନଳୀ ଉଡ଼ିଗଲ ପେଁଏକାଳି
ଉଡ଼ିଲ ପାଲିଂକ ସିଂହାସନ ବି ଶିମିଳି ତୁଳାର ଭଳି ।
ସେଠୁ ଉଡ଼ିଆସି ଏଠାରେ ପଡ଼ିଲ ଜମାଇଲ କିଛି ଥାନ,
ଇତିହାସର ତା ବଡ଼ ପରିହାସ ମୋ ଜାତିର ଅପମାନ ।
ଦୁରୁ ଦେଖି ତାହା କାନ୍ଦୁଛି ବାଜି ଆଖିରେ ଆଖିଏ ଲୁହ ;
କୋଟି ଜନତାର ବୁକୁରୁ ଛୁଟିଛି ଅଗ୍ନିର ଲାଲ୍ ସୁଅ ।
ଝିସ୍ପିଭିଏସକୁ ସୁରାର ପାଜେ ବଂଦୀ କରିବ ତୁମେ ?
ଆରେ ହତଭାଗା ଭାଗ୍ୟ-ଶିକାରୀ ବସିଛ ଶାସକ ନାମେ ।
ତମ ନାସଦାନୀ ଭିତରେ ଭାଙ୍ଗିଛ ବିପ୍ଳବ- ସିବ ଲୁଚି ?
ଶୁଣି କେବେ କାନ୍ଧି ଜଗିନ ଲଢ଼ଇ କରିନି ସାମନା କିଛୁ ।
ଶୁଣି ସବୁଦିନେ ଶୁଣି ।
ତାର ବିପ୍ଳବକ ମୋଦେଶ ତରୁଣ, ବିଧାତାର ଶୁଭବାଣୀ ॥

ସେତ ଏ ଦେଶର ଦୀପ୍ତ ଚେତନା, ଚିର ପ୍ରଦୀପ୍ତ ଶିଖା
ଆଗାମୀ କାଲର ସଂଘୀ ସେ ସିଏ ସକାଳର ଧ୍ୱରଣିକା ।

---

✳ ବାଜି = ଢେଂକାନାଳର ଅମର ଶହୀଦ ୧୨ ବର୍ଷର ପିଲା ବାଜି ରାଉତ ।

ମୂକ ଜନତାର ଦୃଢ଼ ଶପଥର ସେ ପଦ୍ମରେ ଶିରୋନାମା,
ମୋ ଦେଶ ବଢ଼ୋଧୀ ଶଲ୍ପର ପିଏ ଶେଷ ଆଦେଶନାମା ।
ଯୁଗେ ଯୁଗେ ଯିଏ ଆସିଛୁ ଆସିବ ଜଳାଛୁ ଜଳବ ପୁଣି
ସେ ନିଆଁ ନଭେନ ନନଭିବା, ଆଗୁ ଶୋଷଣର ରାଜଧାନୀ ।
ସେ ନିଆଁ ନଭେନ ଭାଙ୍ଗିବା ଆଗୁ ପ୍ରତିକ୍ରିୟାର ଗଡ଼
ସେ ନିଆଁକୁ କେହି ନିଭାଏ ନାହିଁରେ ସେ ଯେ ଚେତନାର ଝଡ଼ ।
ଆପଣା ବୁକେ ସେ ନିଭେ ପୁଣି ଜଳେ, ଜଳେ ପୁଣି ନିଭେ କେବେ
ଆଜି ତା ଜଳାଚ ଜାଳି ଦେବା ପାଇଁ ଜୁଲୁମବାଜର ଶବେ ॥

ଭାବଅଙ୍କ ପ୍ରତିଥର
ବିପ୍ଳବର ତ ହେଲ ଏଠି ଇତ, ଶେଷ ହେଲ ଏଇଥର ।
ସଂଗ୍ରାମ ହେଲ ଶେଷ ।
କ୍ଳାନ୍ତ ସଇନ ଫେରସିବା ଘରେ—ବିଜୟର ଉଲ୍ଲାସ !
ମାଝ ଭୁଲକୁ ଚର
ବିପ୍ଳବ କେବେ ହୁଏନାହିଁ ଶେଷ, ଅଲିଭା ସେ ଚିରକାଳ ।
ମୋର ଉଜାଗର ଆଖି
'ଶୋଇବା ପିଇ'ର ହୁକୁମ ନମାନ କବା ସେ ଯାଉଛୁ ଦେଖି
ସେଇ ନିର୍ଜନ ଶିଖା
ଜଳୁଛୁ ଯେଉଁଠି ଏକାକୀ, ନମାନ ରାତିର ଯବନକା ॥

ମୁଁ ତାକୁ କେବେ ତ ଦେଖିନ ଆଖିରେ ଜୀବନେ ବା ମଲା ପରେ
ତଥାପି ଜାଣେ ସେ ଏକ ମୋ ଅଂଶ, ସେ ଯେ ମୋର ଚେତନାରେ
ରହିଥଲ ଲୁଚ, ମୁଁ ତାହା ଜାଣେନା, କେତେଦିନୁ କେଉଁପରି
ଆଜି ସେ ଆସିଛୁ ସବୁର ଆଗକୁ ମର ଦେହ ଏକ ଧରି ।
ଜ୍ୱଳିଯିବ ରହି କ୍ଷଣେ ॥

ସେ ଯେ ମୋ ଜାତର ଅଲିଭା ସଳିତା ମୁକ୍ତିର ଦୀପାଧାରେ ।
ରେ ଅମଳନ ସୌରଭମୟ ଆରେରେ ମଶାଣି ମଡ଼ା !
କୋଟିଏ ବୁକୁର ଆଶ୍ଳେଷ ତୋତେ ପୁଲଣ ହାତର ଭିଡ଼ା
କପର କଣବ ଛୁନ୍ନ ଆଜରେ କପର ଜାଳବେ ତୋତେ
ଖାନ୍‌ନଗରର ବିକଳ ବାଲିରେ କୋଟି ହୃଦ ଜନପଥେ ?

ପୋଡ଼ି କି ପାରିବ ତାଙ୍କୁ କେଉଁ କାଠ, ତାଙ୍କୁ କି ପାରିବ ଜାଳି ?
ଶୁଖିଲ ପାଉଁଶୁ ତାର କି ଜନ୍ମ ହେବ ନାହିଁ ମହାକାଳୀ ?
ରୁଦ୍ର ବିଷାଣ ଫୁଙ୍କି
ସେଇ ଅଙ୍କୁର ଶିଖାର ଚରଣେ ସୁପ୍ତ, ପାଲଟି ଜଡ଼ ।।

ଅସାମ୍ୟ ଆଉ ଦ୍ୱନ୍ଦ୍ୱର ଜାଲେ ଛିନ୍ନ ପତିତ ଧାରା ।
ବ୍ୟଭିଚାରର ବୀଜାଣୁରେ ଭରା ଆମର ବସୁନ୍ଧରା ।
ମଣିଷର ଚିର ଆଶାଭଙ୍ଗର
ନଷ୍ଟ ଦିଗନ୍ତ ସ୍ୱର,
ବଂଚିବା ପାଇଁ ବିଡ଼ଂବନାର
କେବଳ ନାମାଂତର ।
ଶତ କୁସୁମର ଆଶ୍ୱାସ ପାଇଁ
ଧ୍ୱଂସରେ ହୁଏ ଶେଷ,
ଜୀବନ ଯେଉଁଠି ପାଲଟି ଯାଇଛି
ତାହାରି ଅପଭ୍ରଂଶ ।।
ମଣିଷ ଖୋଜୁଛି ଆପଣା ଠିକଣା ଅଂଧ ଗଳିର ମୋଡ଼େ
ମୂଲ୍ୟ ସବୁତ ଭୁଶୁଡ଼ି ପଡ଼ୁଛି ଦ୍ୱିଧାର ତୁଷାର ମାଡ଼େ ।
ଭିଏତନାମର ନଗ୍ନ ଛାତିରେ ଶାଂତି ସେନାର ବୋମା
ଏଣେ ବଲକାନ୍ ଆମ୍ଭାଙ୍କୁ ନେଇ ମୁକ୍ତିର ତର୍ଜମା ।
ପଥ କାହିଁ ? କିଏ ଜାଣେ ?
ଭ୍ରଷ୍ଟାଚାରର ଶିକାର ହୋଇଛି ସବୁଠି ସବୁଜ ପ୍ରାଣ ।।

ସଢ଼ା ଅତୀତର ପୃଷ୍ଠା ବଦାରି ନୂଆ ମଣିଷର ନାମ
ଖୋଜି ଖୋଜି ପାଇଁ ଦୀପ୍ତ ତରୁଣ ହୋଇଛି ବ୍ୟର୍ଥକାମ ।

ନୂତନର ଅଭିସାରେ
ପୁରୁଣାକୁ ସିଏ ଜୀର୍ଣ୍ଣ ବସନ ପରି ଫିଂଗିଦିଏ ଦୂରେ,
ତଥାପି ହୋଇନି ସିଏ କାପୁରୁଷ ଭୀତ ଅବା ପଳାତକ
ବାସ୍ତବେ ଡରି ପଳାଇ ଯାଇନି ସିଏ ନେତୃତ୍ୱ ଛକ ।
ପଳାଇ ଯାଇନି ସାମନାରୁ ଦୂରେ ଲୋଡ଼ି ଆଶ୍ରୟ କେଉଁ
ମାଦକ ବିଶ୍ୱେ, ମାରିହୁଆନା ଓ 'ମୁକ୍ତ ପ୍ରେମ'ର ଢେଉ

ସ୍ୱପ୍‌ପୀର ଜଗତକୁ ।
ବାସ୍ତବର ଯେ କରିଛ ସାମନା, ଚାହିଁଛ ଦେବାକୁ ତାକୁ
ସୁଂଦର ଏକ ରୂପ ।
ସେହି ସଂଗ୍ରାମୀ ଶିବିରର ତୁମେ ଅଗ୍ରଣୀ ଅପରୂପ ।।

ଏଠି ବି ଆମର ଶାଂତ ସନ୍ଧିରେ
ଲୋଡ଼ା ପୁଣି ସଦାଚାର,
ନିର୍ମଳ ହେବ ଦେଶର ହାଓ୍ୱା—
ନିର୍ମଳ ହେବ ଜଳ ।
ସେଥିପାଇଁ ଯଦି ଲୋଡ଼ା ହୁଏ ହେବ
କିଛି ମଣିଷର ଲାସ୍,
ତରୁଣ ବୁକୁର କଲିଜା ଉପାଡ଼ି
ପୁଲିଶ ଖେଳିବେ ତାସ୍ ।।

ଆଜି ମୁଁ ପଚାରେ ସବୁରିକି ଡାକି କିବା ତାର ଅପରାଧ,
କେଉଁଥି ପାଇଁକି ଶାସନର ଗୁଳି କରିଲା ବକ୍ଷଭେଦ ?
ଅପରାଧ ତୁମ ଫାଟକ ବଂଦ ତୁମେ ପଣ କରୁଥିଲ,
କରୁଥିଲ ବଂଦ ଲୌହ ଦରଜା ରୋକିବାକୁ ଜୁଲୁମର
ବର୍ବର ସ୍ରୋତଧାର ।
ତେଣୁ ତୁମ ପ୍ରାଣ ନନେଇ ବୁଲେଟ୍ ନିଅଂତା ଆଉ କାର ?

ଜଳ ଜଳ ଶିଖା ଜଳ ।
ଆକାଶ ପ୍ରଣମେ ତୁମ ପଦ ତଳେ ପୃଥିବୀ କରେ ଯେ କୋଳ ।
ସେ ଶିଖା ନିଭିବ ନାହିଁ ।
ସେ ଶିଖା ନିଭେନା ନିଭିବା ଯାଏଁ ଶେଷ ସାମଂତସାହୀ ।।



ତା ୨୩ ଅଗଷ୍ଟ, ୧୯୬୯
କଟକ—୧

# 'ମୁଁ ମରିଗଲି – ଏକ ଷ୍ଟାର୍'

( "ମୁଁ ମରିଗଲି ଏକ ଗ୍ରହ……" ଏହାହିଁ ଥିଲା ଶହୀଦ ପ୍ରଦୀପ୍ତର ଶେଷବାଣୀ । ତା ୨୨ । ୮ । ୭୯ରେ ରେଭେନସା କଲେଜ ହତ୍ୟାରୁ ତାର ଆହତ ଶରୀରକୁ ଏକ ଗାଡ଼ିରେ ହାସପାତାଳକୁ ନେବା ବାଟରେ ସେ ଏହି ଶବ୍ଦ କେତୋଟି ଉଚ୍ଚାରଣ କରି ମୃତ୍ୟୁ ମୁଖରେ ଢଳି ପଡ଼ିଥିଲା । )

"ମୁଁ ମରିଗଲି ଏକ ଗ୍ରହ"

ଏଇ ଯେ ତାହାର ଅନ୍ତିମ ବାଣୀ, ଏ ତାର ଘୋଷଣାପତ୍ର ।
ଏ ନୁହେଁ ତ କେଉଁ ମେଲଣି ବେଳର ବାହୁଡ଼ା ପଦର ଧ୍ୱନି,
ଏ ତାର ନିଜର ପରିଚୟ ଲିପି, ଆତ୍ମାର ଚେତାବନୀ ।
କିଏ କହେ ତୁମେ 'ମରିଗଲ' ବୋଲି କିଏ କହେ ତୁମେ 'ଏକା' ?
ତୁମେ ଅନାଗତ-ଚିର ଅନାହତ, ତୁମେ ବହୁ ଓ ଅନେକ ।
ତୁମେ ପାଲଟିଛ ଶକ୍ତିର କଣା କୋଟି ତରୁଣର ଭୁଜେ ;
ତୁମରି ରକ୍ତ କଣିକା ଏଠାରେ ଲକ୍ଷ ବାହିନୀ ଧ୍ୱଜେ,
ରକ୍ତବୀର୍ଯ୍ୟ ପରି ॥

ଶେଷ ଦେବଙ୍କର ଗର୍ଭ ବିଦାରି ଆସିଛ ତ ଅବତରି
ଜାଳିଦେବା ପାଇଁ ଦେଶର ଜଡ଼ତା, ସନ୍ଦେହ, ଦ୍ୱିଧା ଧୂମ ।
ଚେତନାର ଜମି ଫଟାଇ ହୋଇଛ ନୂତନ ଶସ୍ୟ ଜନ୍ମ ॥

"ମୁଁ ମରିଗଲି ଏକ ଗ୍ରହ"

ଅର୍ଦ୍ଧ ଏହାର ବୁଜି ହୋଇଗଲା ଚିରକାଳ ଏଇ ମାତ୍ର
ଦୁଇଟି ତାରକା, ଚେତନାର ଶିଖା ଉଜ୍ଜ୍ୱଳ ଦୁଇ ନେତ୍ର
ନୂଆ ଭାରତର ଏକ ତରୁଣର, ହୋଇଥାଆନ୍ତା ଯେ କବି,
ଚିତ୍ରୀ ବା ବୀର ବୈଜ୍ଞାନୀ, ଅବା ଚିନ୍ତକ ବିଲକ୍ଷଣୀ ।
ଚନ୍ଦ୍ରରେ ଦିଏ ରଚନ୍ତା ଗ୍ରହଣି ସ୍ପର୍ଶ କରନ୍ତା ଠାବ,
ସୃଷ୍ଟି କରନ୍ତା ସ୍ୱତ ଦିଗନ୍ତେ ଉଦୟର ଉତ୍ସବ ।

॥ କବିତା ୧୯୯୦ ॥

କଏ ଜାଣେ ତା ନକ୍ଷତ୍ରକୁ କାହିଁ ଭେଟଂତା କେଉଁପଣ
ସୂର୍ଯ୍ୟ-ସକାଳେ, ତମିର-ରାତେ ନା ଅଗ୍ନିର ସେତୁ ଧଣ !
ମଣଗଲ ଏକ ଗ୍ରହ ।
କୁଲମବାଜର ପଂଙ୍କ୍ତି ତା ଓଠେ ଭଣଲ ବସର ପାହ ।।

ତଥାପି ଦେଶର କୋଟି କୋଟି ଶିଶୁ ପାଇବେ ଯେପଣ ଅନ୍ନ
ନୂତନ ଆଶାର ମଶାଲେ ହୋଇବ ତମିରର ତଥ ଛିନ୍ନ,
ଦେଶରେ ଆସିବ ଶିକ୍ଷା ଆଲୋକ, ବଂଧନ ହେବ ଶେଷ
ସେ ଲାଗି ଲୋଡ଼ା ତ ଅଦ୍ଭୁତ ଜଜର, ଅପଣାର ଅବଶେଷ ।
ଯେ ପଥେ ଯାଇଛୁ ସେ ପଥରୁ କେହି ଆସେନା ତ କେବେ ଫେଣ୍ଟି
ଅଣବାହୁଡ଼ା ସେ ପଥର୍ ଦେଉଳ ତା ପାଇଁ ଯାଇଚ ଖୋଲି ।
ନୁହେଁ ସେ ଏକାନ୍ତ ଅବା ମୂକ ସାକ୍ଷୀ,
ସେ ଏକ ଜୀବନ-ଦୀପ ।
ଜଳିଥିବା ତାର ଧର୍ମ ଏଠି ତ
ନଜଳିବା ହିଁ ପାପ ।।

ଜାଣେ ମୁଁ କହିବ ଶାସନ ଗୋଷ୍ଠୀ ହଲାଇ ବଙ୍କ ଶିର—
'କରଛୁ ସେ ଭୁଲ, ଭାଂଗିଛୁ ବହୁ ଶୃଙ୍ଖଳାର ତ ଡୋର ।
କରଚ ବଂଦ ଲୌହ ଫାଟକ ରୋକିବାକୁ ଯିଏ ପୁଣି
କୁଲମବାଜର ଦୁଆର ସୁଅ, ଶାସନର ରାହାକାଣି ।'
ମୁଁ କହେ, ମଣିଷ କରଇ ତ ଭୁଲ କରେ ନାହିଁ ଭୁଲ ପଶୁ—
ବଂଧା ଗତରେ ଗୁଲେ ଯେ ନିୟମେ ଚର ସ୍ଥାବର ବସ୍ତୁ ।
ମଣିଷହିଁ ଏକ ଉଚ୍ଛଳ ଧାରା, ସ୍ରୋତସ୍ୱିନୀର ଢେଉ
ପଥ ଛାଡ଼ି ସିଏ ଖୋଜେ ନୂଆ ପଥ ନୂଆ ଦିଗଂତ କେଉଁ ।
ସେଇ ଭୁଲର ଚିହ୍ନ ରହିଚ ମେରୁ ବଲୟରେ ଲେଖା,
ଆଟଲାଂଟିକ୍ ତଟରେ ମିଳଛୁ ନୂଆ ଜଗତର ଦେଖା ।
ମହାଶୂନ୍ୟରେ ଖୋଲିଚ ସରଣୀ ତାର ସଂଧାନୀ ଆଖି
ହିମାଳୀ ପଥର ବହୁ ଉର୍ଦ୍ଧ୍ୱରେ ଚର ଅଜଣାରେ ଡାକ ।

ଆଜ ମଣିଷର ସଭ୍ୟତା ସେଇ ଭୁଲରହିଁ ଯେ ମୂଳ
ଚଂଦ୍ରରେ ଉଡ଼େ ମଣିଷ ପତାକା ସେଇ ଭୁଲରହିଁ ଫୁଲ ।
ସେଇ ଭୁଲର ଫସଲ ହୋଇଚ ଗାଂଧି, ଲେନିନ୍, ଶେଲି
ସେଇ ଭୁଲରେ ମାତାଲ୍ ହୋଇଚ ରୁସୋ, ଗାମା, ଡାଂଗା ଜୋଲି

ଚଲ୍ତି ପଥ ଛାଡ଼ି ଅମଡ଼ା ବାଟରେ ଖୋଲୁଛୁ ନୂତନ ରାସ୍ତା,
ସନ୍ତ୍ରୀ ସାବଧାନୀ ଦୃଷ୍ଟି ଏଡ଼ାଇ, ଇତିହାସ ଜାଣେ ତାହା ।
ମଣିଷର ମାନଚିତ୍ର ବଦଳି ଯାଇଚି ଯେ ବାରେ ବାରେ
ତୁମ ଗଣିତର ହିସାବରେ ତାର କାରଣ କି ମିଳିପାରେ ?
ତୁମର ହିସାବୀ ବୁଦ୍ଧିର ମୋଡ଼େ ନୂତନ ଘଟଣା ଧର
ତୁମେ ଅତୀତର କିଂକର ଚିର, ଅବକ୍ଷୟର ଚର !!
ସେଇ ନୂତନର କଂଠ
ସୃଷ୍ଟି କରିଚି ଚିରକାଳ ଯାହା ଦେଶେ ଦେଶେ ଉଦ୍ଭଟ ।
ତୁମର ପଂଝା ମାରିଚି ତାହାକୁ ଗଲା ଚିପି ଏହା ସ୍ପଷ୍ଟ ।।
ମୁଁ ପଚାରେ ତୁମ ଆଇନ କାନୁନ କେଉଁ ସତ୍ୟରେ ଛିଡ଼ା ?
କେଉଁ ଗଣିତର ନିର୍ଭୁଲ ମାପେ ବୁଦ୍ଧିଟା ତୁମ ଗଢ଼ା :
କେଉଁ ନିର୍ଭୁଲ ନିୟମରେ ତୁମେ ମଣିଷକୁ କର ମଡ଼ା ?
କେଉଁ ନିର୍ଭୁଲ ବୁନିଆଦ ପରେ ଶାଂତି ତୁମର ଖାଡ଼ା ?
ଆହେ ନିର୍ଭୁଲ ଦଳ !
ପ୍ରତିକ୍ରିୟା ତୁମେଇ ତ ପ୍ରେତ ଚିରକାଳ ମଶାଣିର ।
ସୃଜନର ତୁମେ ଗୁପ୍ତ ଘାତକ, ପୁଂଜିର କ୍ରୀତଦାସ,
ମଣିଷ ନୁହଁ ତ ମଣିଷର ତୁମେ ନିର୍ଲଜ ଅପଭ୍ରଂଶ ।
ତୁମେ କାହୁଁ ଦେବ ସୃଷ୍ଟିର ମାନ ? ମର୍ଯ୍ୟାଦା ବୀରତ୍ଵରେ !
ତୁମ ଆଇନର ବହିରେ ଏସବୁ ଲେଖା ନାହିଁ କେଉଁଠାରେ ?

ତୁମ ରାଜାରାଣୀ ଗୋଲାମ ବଶେ ଖେଳ ହୋଇଗଲାଣି ଶେଷ,
ଭୂପୃଷ୍ଠେ ପଡ଼ୁଚି ଦେଖ କେଉଁପରି ତୁମ 'ତାସ୍‌ର ଦେଶ'
ଇମାରତ ଧସେ ଆଜି ;
ଭଂଗା ଖିଲଣ ଧଉଳାଇ ଚୂନ ରଖ ନାହିଁ ଆଉ ସାଜି ।
ମରିବାର ଯାହା ମରିଯାଉ ତାହା, ଯାଉ ଯାଉ ତାହା ଭାଜି ।।



ଅଗଷ୍ଟ ୨୮, ୧୯୬୯
କଟକ—୧

# ଅସ୍ତ୍ର ଶୁଦ୍ଧି

— ୧ —

ଅସ୍ତ୍ର ଶୁଦ୍ଧ, ଅସ୍ତ୍ର ଅଜି ଶୁଦ୍ଧ ।
ନିରସ୍ତ୍ର ଭାରତ ଆଜି ଡାକ ଶୁଣେ ହତିଆର ପାଇଁ ।
ସ୍ୱାଧୀନତା ଅନ୍ନୁ ଆମେ ଅସ୍ତ୍ର ପାଇଁ ଦେଇଥିଲୁ ଧ୍ୱନି,
ଉଲଗ୍ନ କ୍ଳୈବ୍ୟକୁ ଆମ ଢାଙ୍କିବାକୁ ଲୋଡ଼ି ବସ୍ତ୍ର ପୁଣି ।
ସେ ବସ୍ତ୍ର ତ ମିଳିନାହିଁ ମିଳିଅଛି କେବଳହିଁ ଗ୍ଲାନି,
ନପୁଂସକ ଅସ୍ତିତ୍ୱରେ ରଖିବାକୁ ମିଳିଚି ଶୁଭଣି—
ବାହୁତଳ ଏକ କୀଟକର,
ମଶାଣିର ଶାନ୍ତି ଆଉ ଅହିଂସାର ଅମୋଘ କମ୍ବଳ ।।

— ୨ —

ବୀରର ଅହିଂସା ଶୁଣୁ, ଗାନ୍ଧିର ଅହିଂସା,
କ୍ଳୀବର ତ ନୁହଁ ।
ନିରସ୍ତ୍ର ଜନତା ଶବେ ଜାଲିଆନାବାଗ ।
(ଯଦି) ଦେଶଟାଇ ହୁଏ,
ଶାନ୍ତି ଯେଉଁଠି ପରିହାସ ହଦାଗ୍ନିର ଶତ୍ରୁ ରଇ ଗୁଳି,
ଶୋଷଣରେ ଯନ୍ତ୍ର ପାଇଁ ଅହିଂସା ତ ଯେଉଁଠି କଂଗ୍ରମାଳ ।
ଏବେକି ଯାଇନୁ ଭୁଲି—
ଚଟ୍ଟଗ୍ରାମର ସୂର୍ଯ୍ୟ ଶପଥ, * ନ କିଛି ଭଗଲ ପରି
ସେଇ ଶପଥର ପଂକ୍ତି ଫୁଲୁଚି ଭୂତଳି ଅସ୍ତ୍ରାଗାରେ ।
ବିଶ୍ୱର ପ୍ରତି ରେଣୁ ଥରଉଠେ ରକ୍ତର ହାହାକାରେ ।।

— ୩ —

ସ୍ୱାଧୀନତା ଯଦି ଖାଲି ଟାଟା ଆଉ ବିରଲାଙ୍କ ସ୍ଥିତି,
ଶୋଷଣରେ ସ୍ୱାଧୀନତା, ମଣିବାର ଅବାଧ ମୁକତି,
ଦୁର୍ବଳର ମାଡ଼ଖାଇ ଦାନ୍ତ ପାଟି ନେଫାଡ଼ିବା ପରି,
ଅଥବା ଜଙ୍ଗଲ ଘରେ ଦେଲା ପରି ଟିକିଏ ଆଂଚୁଡ଼ି
ଯେଉଁଠି ବୀରତ୍ୱ;
ସେଠାରେ ମୁରବି ସାଜି ବଖାଣିବା ଅହିଂସାର ତତ୍ତ୍ୱ

* ଚଟ୍ଟଗ୍ରାମର ଅସ୍ତ୍ରାଗାର ଲୁଣ୍ଠନର ନେତା ସୂର୍ଯ୍ୟ ସେନ (ମାଷ୍ଟର ଦା)

ବଡ଼ ଶ୍ରୁତିକଟୁ ।
ଶୁଣିବାକୁ ଯଦ ପଡେ ଖାଇବେଲ ଡ଼ାୟାରର କଂଠ,
ଅବା ଗୀତା କଦାପି ଟେଗାର୍ଟ୍ରୁ,
ତାହା ବଡ଼ ଅସଙ୍ଗତ କଥା ।
ମରବାଠୁ ଗ୍ଲାନକର ବଂଚବାର ସେଇ ସ୍ୱାଧୀନତା !
( ଯାହା ଏକ ଦସ୍ୟୁମାସ୍ୟୁ କାଂଡ଼ ଓ ଦେଦୁଷ୍ଟତା ! ! )

— ୪ —

ବୁଦ୍ଧ ଆଉ ମହାବୀର ଦେଶ,
ଚିର ସେ ଅନାକ୍ରମଣର୍, କ୍ଷମା ଆଉ କରୁଣାର ଉତ୍ସ ।
ସେ କେବେ ଚାହେଁ ନା ହିଂସା, ଚାହେଁ ନାହିଁ ବୃଥା ରକ୍ତପାତ,
କିଂତୁ ତାହା ଦୁର୍ବଳର, ନିରସ୍ତ୍ରର ଶ୍ରଦ୍ଧା-ପ୍ରଜ୍ଞା-ପୂତ
ଅମ୍ଳାନ କ୍ଷମା ।
ସମାନସ୍କଂଧର ମୈତ୍ରୀ,ଦୌର୍ବଲ୍ୟର ନୁହେ ତ ତର୍ଜମା ॥

— ୫ —

ଅସ୍ତ୍ର ଯୁଦ୍ଧ, ଅସ୍ତ୍ର ଆଜି ଯୁଦ୍ଧ ।
ଅନ୍ତରର ସେ ଅଗ୍ନିଶିଖା ଚାହେଁ ଆଜି ଜାଳି ଦେବା ପାଇଁ
ଧ୍ୱଂସର ଖିଲଣ ।
ନେଇ ତ ଶାଂତ ଅନ୍ଧ ନୂଆ ନୂଆ ସ୍ୱପ୍ନର କୃପାଣ ।
ଭୁଲହେବ, କାଣେ କିଛି ଭୁଲ ।
ସେ ଭୁଲରୁ ଜନ୍ମ ନେବ ନୂଆ ଏକ ସୃଜନର ଫୁଲ ।
ଜଳଯିବ ବର୍ଣ୍ଣଦ୍ୱେଷ, ଜଳଯିବ ଅସାମ୍ୟର ଭେଦ,
ଅସ୍ପୃଶ୍ୟର ଆର୍ତ୍ତନାଦ, ଫାସିବାଦୀ ସେବକ ନରମେଧ,
ଶୋଷଣର ଭଂଗା ଗୃହଥାଦ ।
ମଣିଷର ରକ୍ତେ ସ୍ନାତ ଧରିତ୍ରୀର ବଂଧନ ମିଆଦ
ତେବେ ହେବ ଶେଷ ।
ଅସ୍ତ୍ର ଯୁଦ୍ଧ ଡ଼ାକ ଗୁଡ଼େ ଭାରତର ଦୃପ୍ତ ଇତିହାସ ॥

□□□

କଟକ—୧

ସେପ୍ଟେଂବର ୯, ୧୯୬୯.

# ସ୍ୱାଧୀନ ଦେଶର ଜନ୍ମଦିନେ

ଆଜି ଏ ଉଷାରେ ପ୍ରଣାମ କରେ ମୁଁ
ମୋ'ଦେଶ ଶହୀଦ ଦଳେ,
ଅଂଧାରେ ଯାର ସବୁଜ ପ୍ରାଣର ଶିଖା
ନୂତନ ଯୁଗର ଇଂଗିତ ଦେଲା,
ସ୍ମୃତିକୁ କରି ଫିକା
ଉଡନ୍ତୁ ଯାହାର ଦେଶେ ଦେଶେ କାଳେ କାଳେ ॥

ଆଜି ସକାଳେ ମୁଁ ପ୍ରଣାମ କରୁଛି
ଜାତିର ପତାକାରେ,
ଦେଶଦ୍ରୋହର ଲାଗି ଶାଣିତ କରୁଛି ଖଡ୍ଗ,
ଦଗାବାଜ୍ , ଦାଗୀ ଓ ମୁନାଫାଖୋରେ,
ଧ୍ୱଂସର ଲାଗି ଦିଏ ମୁଁ ଆଦେଶନାମା ॥

ଆଦେଶ ଦିଏ ମୁଁ ଆଦେଶ ଦିଏ ମୁଁ ଆଜି—
ଦୂର କର ସବୁ ଜୁଲୁମ୍, ଶୋଷଣଡାକ,
ସବୁ ଧନ୍ଦାବାଜ, ସଂଗପାଳର ଦଳ
ଦୃପ୍ତ କ୍ରୋଧର ଦାବାନଳେ ପୋଡ଼ ଖୋଜ ॥

ଆଜି ସକାଳେ ମୁଁ ବଂଦନା କରେ
ଜନତାର ସଂହତିରେ,
ବଂଦନା କରେ ମୁକ୍ତି-ପିପାସୀ ଦଳେ,
ସଂଗୀନ୍ ଯାର ଅଂଗୁଳି ପରି
ନୂଆ ଦିଗନ୍ତେ ଠାରେ ॥



॥ କବିତା ୧୯୯୦ ॥

ବଂଦନା କରେ ଶଷ୍ପ ରେଖାର
କଂପିତ ଦୂଳ ଧାରେ
ବର୍ଦ୍ଧମାନ ଏ ପ୍ରାନ୍ତରର ଶିବିରରେ ॥

ଆଜି ସକାଳେ ମୋ' ସ୍ୱାଧୀନ ଦେଶର
ଏ ଶୁଭ ଜନ୍ମଦିନେ,
ସକଳ ଅଶୁଭ, ଅମଂଗଳର ଶିରେ
ମୃତ୍ୟୁର ସ୍ୱପ୍ନ ଲେପିଦିଏ ଜଳ ଦ୍ୱାରେ,
ଧନତନ୍ତ୍ରର ଧ୍ୱଂସର ସନଦରେ
ଆଜି ଶୁଭଦିନେ ସ୍ୱାକ୍ଷର ମୁଁ ତ କରେ ॥

ଶସ୍ୟ ନେଇ ମୃତ୍ତିକାର
ସୁଂଦର ଲତା ତଳେ
ବିଶ୍ରାମ କରେ ଯେଉଁଠି କ୍ଳାଂତ
ଗଉଳିଏ ଦଳେ ଦଳେ,
ସ୍ୱପ୍ନ ପାଶେ ଶହରର ଶେଷେ
ଆଜି ପୁଣି ଯେଉଁଠାରେ
ନୂତନ ଦୁନିଆ ଗଢ଼େ,
ନୂତନ ସଭ୍ୟତା ତା' କଥା ପଢ଼େ ମୋ' ମନେ ।
ଆଜି ଶୁଭଦିନେ ପ୍ରଣାମ କରେ ମୁଁ
ଅଗ୍ରଗାମୀର ଦଳେ,
ବଂଦନା କରେ ପ୍ରଗତିର ଅଭିଯାନେ ॥

ଆଜି ଶୁଭଦିନେ ପ୍ରଣାମ କରେ ମୁଁ
ନୂତନ କଂଠ ସ୍ୱରେ,
ସଲାମ କରେ ମୁଁ ମୁକ୍ତିର ଆହ୍ୱାନରେ ।
କାଏମ କରେ ଯେ ମଣିଷର ଅଧିକାର,
ଖତମ କରେ ଯେ ଦାନ-ଖଇରାତି ଖେଳ ।
କଲ କାରଖାନା, କ୍ଷେତ ଖମାରେ
ଗ୍ରାମେ, କୋଳାଲୟେ, ରେଲ, ବଂଦରେ
ଆଗୁଆନ କଦମରେ
ଆଜି ମୁଁ ସଲାମ କରେ ॥

ନମନ କରେ ମୁଁ ଅଗ୍ରଗାମୀ ସେ
ଭୁଲି ଏ ଜନମରେ,
ମଣିଷର ଲକ୍ଷ ଲକ୍ଷ୍ୟରେ ଯିଏ ସେ
ଜୀବନର ଛବି ଗଢ଼େ ॥

ମଣିଷର ସ୍ୱପ୍ନ, ମଣିଷର ଖୁସି
ଉପାଣିତ କରେ ଯାହାର ବଂଶୀ
ପ୍ରତିଭାର ଭାବ-ବନ୍ଧନ୍ ଉଦ୍ଧାର ଯିଏ କରେ—
ମୋ' ଦେଶ ସାହିତ୍ୟକୁ ;ଜଡ଼ତାର ଶିକୁଳିରୁ
କଳାକୁ ମୁକ୍ତ କରେ,
ଯେଉଁ କଳାକାର ସଙ୍ଗେ ମିଳାଏ ହାତ,
କାନପାତି ରହେ ଶୁଣିବାକୁ ତାର ରୁଦ୍ର ଲଳିତ ଗୀତ
ଦୁନିଆର ହୃଦତଳେ
ଆଜି ପ୍ରଭାତେ ମୁଁ ପ୍ରଣାମ କରୁଛି
ପ୍ରଗତିର ପତାକାରେ ॥
□□□

ମିଶନ୍ ରୋଡ୍
କଟକ-୧
ଅଗଷ୍ଟ—୧୯୮୭

# ଶିକ୍ଷକର ପଣ

( ୧୯୮୪ ମସିହାରେ ହୋଇଥିବା ଓଡ଼ିଶାରେ ବ୍ୟାପ୍ତ ଶିକ୍ଷକ ଆଂଦୋଳନ ଉପଲକ୍ଷରେ ଲେଖା )

ସାରା ଜୀବନ ତ ପଢ଼ାଇଲୁଁ ପାଠ
ଛୁଆଂକୁ ଭଲ କରି
ଭୋକ, ଉପାସରେ, ସହି ଅପମାନ,
ବଦଳି, ଯାତନା, ଗାଳି ।

ଶିଖାଇଲୁଁ କେତେ କବିତା, କାହାଣୀ,
ଦେହ ଝାଳ ଦେହେ ମାରି ।

ଭୂଗୋଳ, ଗଣିତ, ଇତିହାସ କେତେ
ଘୋଷାଇଲୁଁ ଗଳା ଚିରି ।

(ଆଜି) ମହାମୂର୍ଖଙ୍କୁ ପଢ଼ାଇବୁ ପାଠ
ଆସିଛୁଁ ପଣ କରି ॥

କିନ୍ତୁ ହାୟ !
କାନରେ ତାଂକର ପାଲଟୁଂଚା ଯେ
କଏ ଯେ ଦେଇଛି ଭରି ।

କାହୁଁ ତ ଶୁଟେଭଜା ଚଳାଇଲେ ଯେବେ
ଆଖି ଦି'ଟା କଣା ପରି ।

ମଗଜରେ ଭରି ଛଟିଲା ଗୋବର,
ବାଦୁଡ଼ିର ଡେଣା ପରି
ଛାତି ଧଡ଼ଧଡ଼, ଯଦିଚ ଭେଡ଼
ଗଳାରେ ରହିଛି ଝୁଲି ॥

ଆମକୁ ଦେଖିଲେ ପଳାଇ ଲୁଚୁଛ
ବଂଧୁକ, କମାଣ ଧଣ,
କପର ତାହାଙ୍କୁ ପଢ଼ାଇବୁଁ ପାଠ
ନ ବୁଝନ୍ତି ତା' ବଳି ଗଳି !

ଆମ ସ୍କୁଲପଢ଼ା ଦନ ଉପହ୍ୱରେ
ହୁଏ ସେ ସ୍କୁଲଆ ଭଡା,
ସ୍କୁଲଆଡ଼େ କଟେର ନିଷେଧ ଆଇନ
ଘଣ୍ଟିକ ଘଣ୍ଟିକ ଜାଣ ।

କ ପାଠ ତାହାଙ୍କୁ ପଢ଼ାଇବୁଁ ଆମେ
ଣାଠରେ ଯେ ମହାବଳୀ ।

କଟ୍ଇବୁଁ ତାଙ୍କୁ ବେଂଚ ଉପରେ
ଠିଆ ଅବା କେଉଁପରି ?

କେଉଁପରି ଅବା କାନ ତାର ଦେବୁଁ ମୋଡ଼ି ?

ସେ ତ ପଳାଉଛି ଏପଟ ସେପଟ
ପାଠସ୍କୁଲ ସେ ତ ଭଣ !!

□□□

୨୮-୧୦-୧୯୮୪

ମିଶନ ରୋଡ଼

କଟକ—୭୫୩୦୦୧

# ସକଳ ଆଶାର
# ନବତମ ଶିରୋନାମା

ଯା'ର ଜନତାର ଲେନିନ୍ ନିଶାଣ
ଲେନିନ୍ ଜୀବନ ଶିଖା,
ସେ ଏକ ସ୍ୱପ୍ନ ଧୂଳିର ଗୋଧୂଳି,
(ପୁଣି) ଚାନ୍ଦବର ସେ ଟୀକା ।

ସ୍ୱପ୍ନଠୁ ବଳି ଯିଏ ସେ ଦୂରର
ବାସ୍ତବଠାରୁ ଅଛି ନିକଟର ।

ସେ ଅଙ୍କେ ମଣିଷ ସମାଜର ଏକ
ଗଣ୍ଡିରୁ ଗଣ୍ଡିରନ୍ତର
ଉତ୍ତୃଙ୍ଗ ଚେତନାର ।
ଲେନିନ୍ ପତାକା ଯା'ର ବିଶ୍ୱର, ମେରୁଦଣ୍ଡ ଜନତାର ।।

ଲେନିନ୍ ଲେନିନ୍ ଡାକେ ମୋ ଲେଖନୀ
ଯେତେଥର ଯେତେବେଳେ—
ତୃପ୍ତି ଆସେନା, ପାରେନା ମୁଁ ଛୁଇଁ
ଦ୍ରାଘିମା ତା' କେବେହେଲେ ।

ମାତ୍ର ଦୃଷ୍ଟାନ୍ତ ଦେଖାଉଏ ସେ ଯେ,
ଅଳେଡ଼ାରେ ପୁଣି କେବେ
ଖେତ ଓ ଖମାରେ, କାରଖାନା ଘରେ
ଚାଷୀ ଓ ଶ୍ରମିକ ଯେବେ—
ମୁକାବିଲା କେବେ କରେ
କାଏମୀ ସ୍ୱାର୍ଥ ପୁଂଜିର କେଉଁ ଚକ୍‌ଚକ୍ ହାତଥରେ ।।

ରାତ୍ରି ଶେଷର ସେ ଏକ ଡ଼ାକରା,
ସହରତଳିର ଶେଷେ
ବଣ ଜଂଗଲେ, ପାହାଡ଼େ ପାହାଡ଼େ
କୃଷକର ଜନ୍ମ ଘୋଷେ ।

।। ଜବ୍ରତା ୧୯୯୦ ।।

କୃଷାଣୀର ଦୁକୂଳଗାରେ—
ଯିଏ ଉଜ୍ଜ୍ୱଳ ଧାରଣ ଶ୍ୟାମଳ ମେଘର ଯେ ଅପେକ୍ଷାରେ ॥

ଲେନିନ୍ ଲେନିନ୍ ସେ ଏକ ଦରଶୀ
ସେ ଏକ ପଥର ଡାକ,
ସାରା ଅତୀତର ମାନଚିତ୍ରରେ
ସେ ଏକ ନୂତନ ଦାଗ—
ମଣିଷର ନୂଆ ସୀମା ।
ଯିଏ ଯେ ପାଲଟି, ସକଳ ଆଶାର ନବତମ ଶିରୋନାମା ।
ଲେନିନ୍ ଆମର ସାଥୀ
ଲେନିନ୍ ସେ ଆମ ଜୀବନର ଶିକ୍ଷା. ହଟାଇ ଭସ୍ମ ଓ ନଢ
ନୂଆ ମୂଲ୍ୟର ଧ୍ୱଜା
ସେ ଦେଇଛି ଆଜି ପ୍ରତି ହାତେ ଟେକି,
ଦୂର କର ଭୁଲ ତୃଷ୍ଣା ।

ଆଜି ଲେନିନ୍‌ର ନାମେ
ନୂଆ ସ୍ପନ୍ଦନ ଖେଳିଯାଏ କେଉଁ ସୁଦୂର ଭିଏତ୍‌ନାମେ ।
ସୁଦୂର ଭାରତେ ଆଜି ବି ସେ ଜଳେ
ପ୍ରତିଟି ହୃଦର ଗ୍ରାମେ
ଲାଲ ତାମ୍ର ପତ୍ର, ସେ ପୁଣି ଜଳୁଛି
ଆଫ୍ରିକା ଘନ ବନେ,
ଦେଇ ପ୍ରଗତିର ଅଗ୍ରଣୀରେ ମୁଁ ଆଜି ଯେ ସ୍ମରଣ କରେ,
ଡାକେ ଧରି ତାର ନାମ
ତା'ର ନାଁରେ ଜାଗେ କୋରାପୁଟ, ପୁଣି ଆନ୍ଧ୍ର ଗଂଜାମ
ସେ ଯେ ହକାରର ସ୍ୱର ।

ଲେନିନ୍ ଲେନିନ୍ ଡାକେ ମୋ ଲେଖଣୀ
ଯେତେବେଳେ ଯେତେଥର
ତୃପ୍ତି ହୁଏନା, ତଥାପି ମୁଁ ଡାକେ
ଯୁଗେ ଯୁଗେ ବାରବାର ॥

( ଲେନିନ୍ ଶତବାର୍ଷିକୀ ଉପଲକ୍ଷେ ) □□□

ଅପ୍ରେଲ ୧୯୭୦
କଟକ-୨